ରାଜ୍ୟ ତଥା ସର୍ବଭାରତୀୟ ନାଟକ ପ୍ରତିଯୋଗିତାରେ ପୁରସ୍କୃତ ନାଟକ

# ଅନନ୍ୟ ଏକ ବିପ୍ଳବ


ରଚନା--

ନାଟ୍ୟାଚାର୍ଯ୍ୟ ଚିନ୍ତାମଣି ଜେନା

ବିଶିନାବର, କଟକ-୧୨



ପ୍ରକାଶକ— ସଂବଭ ପବ୍ଲିକେଶନ

ବିଶିନାବର, କଟକ-୧୨

ସୁଖୋପଯୋଗୀ ସାମାଜିକ ନାଟକ :

"ଅନ୍ୟ ଏକ ବିପ୍ଳବ"

ରଚନା :

ନାଟ୍ୟାଚାର୍ଯ୍ୟ ଚିନ୍ତାମଣି ଜେନା

ପ୍ରକାଶକ :

ସଂସ୍କୃତ ପବ୍ଲିକେଶନ

ବିଡ଼ିନାକର, କଟକ-୧୨

ପ୍ରଥମ ପ୍ରକାଶନ :

ଗଣେଶ ପୂଜା

ତା ୧୨-୮-୯୮

ପ୍ରତିଷ୍ଠାନ :

ଶ୍ରୀ ଲିଙ୍ଗରାଜ ପଣ୍ଡା

ପୁସ୍ତକ ପ୍ରକାଶକ

ବାଙ୍କା ବଜାର, କଟକ-୨

ପ୍ରଚ୍ଛଦପଟ :

ଅଧ୍ୟାପକ ମାନସ ରଂଜନ ଜେନା

ବି. କେ. କଲେଜ ଅଫ୍ ଆର୍ଟ ଆଣ୍ଡ କ୍ରାଫ୍ଟ

ଖଣ୍ଡଗିରି, ଭୁବନେଶ୍ୱର

ମୂଲ୍ୟ :

ଟ ୧୫.୦୦ (ପନ୍ଦର ଟଙ୍କା ମାତ୍ର)

ବାସନ୍ତୀ ସାଂସ୍କୃତିକ ପରିଷଦ, ଓ ନଟରାଜ ନୃତ୍ୟପରିଷଦ ଦ୍ୱାରା ରାଜ୍ୟ ତଥା ସର୍ବଭାରତୀୟ ବହୁଭାଷୀ ନାଟକ ପ୍ରତିଯୋଗିତାରେ ପୁରସ୍କୃତ ନାଟକ

# ଅନ୍ୟ ଏକ ବିପ୍ଳବ

ସ୍ଥାନ– ବାସନ୍ତୀ ରଙ୍ଗମଞ୍ଚ, ରାଉରକେଲା - ତା ୨୮ । ୧୦ । ୮୯
ସିଭିକ ସେଣ୍ଟର, ରାଉରକେଲା – ତା ୨୦ । ୪ । ୯୦
ପ୍ରୟାଗ ସଙ୍ଗୀତ ସମିତି ରଙ୍ଗମଞ୍ଚ, ଏଲାହାବାଦ- ତା ୨୨ । ୨ । ୯୧
କଳା ବିକାଶ କେନ୍ଦ୍ର, କଟକ – ତା ୨୨ । ୧୦ । ୯୩

ବିଭିନ୍ନ ସମୟରେ, ବିଭିନ୍ନ ଭୂମିକାରେ ଅଂଶ ଗ୍ରହଣ କରିଥିଲେ—

୧ । କୁବେର— (ରାସ୍ତା କଡର ମୋଚି) ବ୍ରଜ ସୁନ୍ଦର ପାଢୀ, ଚିନ୍ତାମଣୀ ଜେନା

୨ । କୁମାର— (କୁବେର ମୋଚିର ପୂର୍ବଜନ୍ମର ନାମ) ଗଙ୍ଗାଧର ଜେନା, ମୀନକେତନ ମହାପାତ୍ର

୩ । ମଧୁ— (ରିସର୍ଚ୍ଚ ଷ୍ଟୁଡେଣ୍ଟ) ସନ୍ତୋଷ ଦାଶ, ଖିରୋଦ ପରିଡ଼ା

୪ । ରାମ— (ଅନାଥ ଯୁବକ) ଗଣେଶ ମହାନ୍ତି, ସୁଶାନ୍ତ ପାଣିଗ୍ରାହୀ

୫ । ଶ୍ୟାମ — (ଅନାଥ ଯୁବକ) ସୁଶାନ୍ତ ଦାସ, ଅରୁଣ ସାହୁ

୬ । ହର ଓ ହରି ମହାନ୍ତି - (ସ୍ୱାଧୀନତା ପୂର୍ବ ଓ ପରର ସିପାହୀ) ଅଶୋକ ବଳ

୭ । ମଙ୍ଗରାଜ ଓ ମର୍ଦ୍ଦରାଜ - (ସ୍ୱାଧୀନତା ପୂର୍ବ ଓ ପରର ପୋଲିସ ଇନ୍‌ସପେକ୍ଟର) ସୁଦର୍ଶନ ହିପାଠୀ

୮ । ନଟବର— (ଠକ ନେତା) ସର୍ବେଶ୍ୱର ଲେଙ୍କା, ଅରକ୍ଷିତ ପାତ୍ର

୯ । ବୈରାଗୀ — (ଭଣ୍ଡ ବାବାଜୀ) ମଣ୍ଟୁ ପାଢ଼ୀ, ରବି ମହାରଣା

୧୦ । କିଷନ ଲାଲ— (ସେଠ) ପ୍ରକାଶ ସାହାଣୀ, ଅମୂଲ୍ୟ ଦାଶ

୧୧ । ଗାନ୍ଧି— (ବାପୁଜୀ) ପ୍ରଭାକର ରଣା, ଉତ୍ତମ ସାହୁ

୧୨ । ହୀରା— (କୁମାରର ଭଉଣୀ) ବନ୍ଦନା ମହାପାତ୍ର, ପୁଷ୍ପା ମିଶ୍ର

୧୩ । ମାନସୀ- (କୁବେର ମୋଚିର ପାଳିତା କନ୍ୟା) ନିବେଦିତା ଜେନା, ମାମିନା ରାଉତରାୟ

## ଅନ୍ୟାନ୍ୟ ସହଯୋଗୀ ଭୂମିକାରେ—

୧ । ଷ୍ଟିଫେନ୍‌ସନ୍—(ଇଂରେଜ ଜଜ୍) ମହେଶ୍ୱର ସାହୁ

୨ । ଦଣ୍ଡପାଣି— (ସରକାରୀ ଓକିଲ) ଶତ୍ରୁଘ୍ନ ପାତ୍ର

୩ । ଥୋମାସ— (ଇଂରେଜ ସରକାର ଓକିଲ) ଅକ୍ଷୟ ନାୟକ

ସଙ୍ଗୀତରେ— ସୁରେନ୍ଦ୍ର ଜେନା, ନରେନ୍ଦ୍ର ମଣ୍ଡଳ, ଅମର ସାହୁ, ପୁଷ୍ପଲତା ଦାସ

ପରିଷ୍ଟଜନା— ବ୍ରହ୍ମାନନ୍ଦ, ରବିନ୍ଦ୍ର ଓ ପ୍ରତିମା ଜେନା

ନିର୍ଦ୍ଦେଶନା— ଅକ୍ଷୁ ପ୍ରଧାନ, ରାଜେନ୍ଦ୍ର ପଣ୍ଡା, ରିତେନ୍ ଦାସ

ରଚନା— ନାଟ୍ୟାଚାର୍ଯ୍ୟ ଚିନ୍ତାମଣି ଜେନା

-0-

## ନାଟକ ପ୍ରଯୋଜନା ସମ୍ପର୍କରେ

ଏକ ଦୃଶ୍ୟ ବିଶିଷ୍ଟ ଏହି ନାଟକରେ ଚାରିଗୋଟି ଏକ୍ଟିଂ ଜୋନ ଅଛି । କଳାକାରମାନେ ବିଭିନ୍ନ ପରିବେଶ ଓ ପରିସ୍ଥିତିକୁ ନେଇ ଉକ୍ତ ଜୋନ୍‌ମାନଙ୍କରେ ଅଭିନୟ କରିବେ । ସଙ୍ଗୀତ ଓ ଆଲୋକ ଏହି ନାଟକର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ । ଅତୀତ ଓ ବର୍ତ୍ତମାନକୁ ଆଖି ଆଗରେ ରଖି, ସ୍ୱାଧୀନତା ପୂର୍ବ ଓ ପରର ସିପାହୀ ଓ ପୋଲିସ ଇନ୍‌ସପେକ୍ଟର ଭୂମିକାରେ ଅଭିନୟ କରୁଥିବା କଳାକାରଙ୍କୁ ସ୍ଥାନ, କାଳ ନେଇ ପୋଲିସ ପୋଷାକ ପିନ୍ଧାଇବାକୁ ପଡ଼ିବ । ସବୁ କଳାକାରମାନେ ନିଜ ଚରିତ୍ରର ଅଭିନୟ ପାଇଁ ପ୍ରସ୍ତୁତ ରହିବେ । ନାଟକକୁ ଗତିଶୀଳ କରିବା ହେଉଛି ନିର୍ଦ୍ଦେଶକଙ୍କ କାମ । ନିଜର ମୌଳିକ ଚିନ୍ତାଧାରା ଅନୁସାରେ ନିର୍ଦ୍ଦେଶକ ଅଭିନୟ ଜୋନ ଗୁଡ଼ିକୁ କମ୍ପୋଜ କରିବେ । ଏହି ନାଟକରେ ଟିମ୍ ଓ୍ୱାର୍କ ଯଥେଷ୍ଟ ରହିଛି । ସମସ୍ତଙ୍କୁ ନିର୍ଦ୍ଦେଶକଙ୍କ ନିର୍ଦ୍ଦେଶନା ମାନିବାକୁ ପଡ଼ିବ । ଏହି ନାଟକରେ ମୁଁ ନିଜେ ନିର୍ଦ୍ଦେଶକଙ୍କ ନିର୍ଦ୍ଦେଶନା ମାନି ଅଭିନୟ କରିଛି । ଭୁଲି ଯାଇଛି ମୁଁ ଜଣେ ନାଟ୍ୟାଚାର୍ଯ୍ୟ ବୋଲି । ତେଣୁ ନାଟକର ପ୍ରଯୋଜନା ସବୁ ସ୍ଥାନରେ ଆମର ସଫଳ ହୋଇଛି । ଅନେକ ପୁରସ୍କୃତ ହୋଇଛୁ । ନାଟକର ସଫଳ ପ୍ରଯୋଜନା ପାଇଁ ସମସ୍ତଙ୍କର ଆନ୍ତରିକ ସହଯୋଗ ଏକାନ୍ତ କାମ୍ୟ ।

ନାଟ୍ୟାଚାର୍ଯ୍ୟ

# ଦୃଶ୍ୟାରମ୍ଭ

[(କୌଣସି ରାଜ୍ୟର ରାଜଧାନୀ ଉପକଣ୍ଠରେ ଅବସ୍ଥିତ ପ୍ରଧାନ ସଡକ କଡ଼ରେ ଏକ ପୁରାତନ ବରଗଛ । ପଛରେ ବହିଯାଉଛି ଅନାମିକା ନଦୀ । ଗଛର ବାମପଟରେ ମୂଳକୁ ଲାଗି ଏକ ଝୁମ୍ପୁଡ଼ି ଏବଂ ଡ଼ାହାଣ ପଟରେ କୁବେର ମୋଚିର ଯୋତା ପାଲିସ ଦୋକାନ । ଯୋତା ଦୋକାନର କିଛି ଦୂରରେ, ରାସ୍ତାକଡ଼ରେ ସ୍ଥାପିତ ଗାନ୍ଧିଜୀ ଙ୍କ ପ୍ରତିମୂର୍ତ୍ତି । ସାମନାକୁ ତାର ପଡ଼ିଛି ଦୁଇଖଣ୍ଡ ମାଙ୍କଡ଼ା ପଥର ।)]

(ସମୟ ରାତ୍ର ଚତୁର୍ଥ ପ୍ରହର । ଅସ୍ତଗାମୀ ଅଷ୍ଟମୀ ଚନ୍ଦ୍ରର ଆଲୋକରେ ସ୍ଥାନଟି ଆଲୋକିତ । ବରଗଛ ମୂଳକୁ ଲାଗି, ରାସ୍ତା ଉପରେ ଶୋଇଯାଇଛନ୍ତି- ବୃଦ୍ଧ କୁବେର ମୋଚି ଏବଂ ତାର ଆଶ୍ରିତ ଅନାଥ ଯୁବକ ରାମ ଓ ଶ୍ୟାମ । ସଂଗୀତର ମୂର୍ଚ୍ଛନା ଭାସି ଆସିଛି । ସାଇକ୍ଲୋମାର ଚନ୍ଦ୍ର ଦେହରେ ଦେଖାଯାଉଛି ମହାକାଳର ଛବି । ଅନ୍ତରାଳରୁ ଶୁଣାଯାଉଛି ତାର ଗୁରୁଗମ୍ଭୀର ସ୍ୱର । )

ମହାକାଳ—(ଅନ୍ତରାଳରୁ)ମୁଁ ମହାକାଳ । ମୁଁ ଭବ ରଙ୍ଗମଞ୍ଚର ସୂତ୍ରଧର ମୁଁ ସବୁରି ଜୀବନ ନାଟକର ପ୍ରଯୋଜକ । ମୁଁ ସତ୍ୟ, ଶିବ ସୁନ୍ଦର । ମୁଁ ସୃଷ୍ଟି, ମୁଁ ପ୍ରଳୟ । ଏ ବିଶ୍ୱ ବ୍ରହ୍ମାଣ୍ଡ ମୋର ଖେଳଘର । ସମସ୍ତଙ୍କ ଭାଗ୍ୟଡ଼ୋରୀ ମୋରି ହାତରେ । ସୂର୍ଯ୍ୟ ଚନ୍ଦ୍ର, ପୃଥିବୀ, ଆକାଶ ପାତାଳ– ଯେଉଁଠି ଖୋଜିବ···

ମୋତେ ସେଇଠି ପାଇବ । ମୁଁ ଶାନ୍ତ, ମୁଁ ରୁଦ୍ର । ମୁଁ କାହାରି ଗର୍ବ ଅହଂକାର ସହି ପାରେନା । କେତେ ଅହଂକାରୀ ଦେବ ଦାନବ ମାନବ-ମୋରି କରାଳ ଗର୍ଭରେ ଲୀନ ହୋଇ ଯାଇଛନ୍ତି । ମୁଁ ତ୍ରିପୁରବାସୀଙ୍କୁ ଶୁଣେଇଛି ଅନେକ କାହାଣୀ ଦେଖାଇଛି ଅନେକ ନାଟକ । ମୁଁ ଆଜି ଶୁଣେଇବି- "ଅନ୍ୟ ଏକ ବିପ୍ଳବ" ର କାହାଣୀ··· ଦେଖାଇବି- ଅବହେଳିତ, ନିଷ୍ପେଷିତ, ନିସ୍ବ ଅସହାୟ ରାସ୍ତା କଡ଼ର ମଣିଷ ମାନଙ୍କର ଜୀବନ ଯାତ୍ରା । (ପଜ) ରାତ୍ର ବର୍ତ୍ତମାନ ଚତୁର୍ଥ ପ୍ରହର । ରାତ୍ରି ପାହିଲେ ଗାନ୍ଧି ଜୟନ୍ତୀ । ଗାନ୍ଧି ଜୟନ୍ତୀ ପାଳନ ନିମିତ୍ତ ସରକାରୀ ବେସରକାରୀ ସଂସ୍ଥା ମାନଙ୍କରେ ବିରାଟ ଆୟୋଜନ ଚାଲିଛି । ଗାନ୍ଧିବାଦୀ ନିସ୍ବ, ଅସହାୟ କୁବେର ମୋଚି ଏଇ ରାସ୍ତା କଡର ବରଗଛ ମୂଳେ ଶୋଇ ବର୍ତ୍ତମାନ ସ୍ବପ୍ନ ଦେଖୁଛି- ବାପୁଜୀଙ୍କୁ । ଅମୃତ ବେଳାରେ ବାପୁଜୀ ସ୍ବର୍ଗରୁ ମର୍ତ୍ତ୍ୟକୁ ଓହ୍ଲାଇ ଆସୁଛନ୍ତି ତାଙ୍କର ପ୍ରିୟ ଜନଙ୍କୁ ଭେଟିବାପାଇଁ । ଏଇଠୁ ଆରମ୍ଭ ହେଉଛି ଆଜିର ନାଟକ "ଅନ୍ୟ ଏକ ବିପ୍ଳବ"— (ଅନ୍ତର୍ଦ୍ଧାନ)

(ଶୁଣାଯାଉଛି ବାପୁଜୀଙ୍କ ପ୍ରିୟ ଭଜନ-ବୈଷ୍ଣବ ଜନତୋ··· ର ସ୍ବର । ମଞ୍ଚରେ ଦେଖାଯାଉଛି । ସ୍ବପ୍ନର କୁହେଳିକା । ବାପୁଜୀଙ୍କ ଆତ୍ମା, ତାଙ୍କ ପ୍ରତିମୂର୍ତ୍ତିରୁ ବାହାରି, ରାସ୍ତା ଉପରେ ସହର ଆଡ଼କୁ ଆଗେଇଛନ୍ତି । ଦୂରରୁ ଶୁଣାଯାଉଛି ପୋଲିସ ହୁଇସିଲ ଓ ନାଇଟ ଡ୍ୟୁଟିରେ ଥିବା ସିପାହୀ ହରି ମହାନ୍ତିର କୁହାଟ । )

ହରି—(ଅନ୍ତରାଳରୁ) କୌନ ହେ ? କୌନ ହେ ? ରୁକ୍ ଯାଓ ରୁକ୍ ଯାଓ··· (ଟର୍ଚ୍ଚ ଆଲୋକ ପଡ଼ିଛି ଗାନ୍ଧିଜୀଙ୍କ ଉପରେ)

ଗାନ୍ଧିଜୀଙ୍କ ଆତ୍ମା- (ଅଟକି ଅପେକ୍ଷା କରିଛନ୍ତି)

ହରି—(ପ୍ରବେଶ) କିଏ ? କିଏ ତୁମେ ଏତେ ରାତିରେ ?

ଗାନ୍ଧିଜୀଙ୍କ ଆତ୍ମା– ତୁମେ ମୋତେ ଚିହ୍ନିପାରୁନ ବତ୍ସ ?

ହରି—(ଟର୍ଚ୍ଚମାରି) ଚିହ୍ନି ପାରୁନି ବୋଲିତ ପଚାରୁଛି । (ଭରିପଟ ବୁଲି ଦେଖୁଛି । ) ହଁ, ତୁମ ଫଟୋ କୋଉଠି ଦେଖିଲା ପରି ମନେ ହେଉଛି···

ଗା: ଆ:—ସାରା ଦେଶରେ ଆଜିମୋର ଜୟନ୍ତୀ ପାଳିତ ହେଉଛି— ଅଥଚ ତୁମେ ମୋତେ····

ହରି—(ମନେ ପକାଇ) ଓ··· ଆପଣ ତା'ହେଲେ ମିଷ୍ଟର ବେନ୍ କିଙ୍ଗ୍‌ସଲେ । ଗାନ୍ଧି ଫିଲିମରେ ଗାନ୍ଧି ରୋଲଟା କରିଛନ୍ତି ।

ଗା: ଆ:—ନାଁ, ମୁଁ ନିଜେ ମୋହନ ଦାସ କରମ ଚାନ୍ଦ ଗାନ୍ଧି । ସମସ୍ତେ ମୋତେ ଭକ୍ତିରେ ଡାକନ୍ତି ବାପୁଜୀ···

ହରି—ବାପୁଜୀ !!! ଆପଣ··· (ସାଲ୍ୟୁଟମାରି) ନମସ୍କାର ବାପୁଜୀ... ଆପଣ ଏଣେ କୁଆଡ଼େ ?

ଗା: ଆ:—ରାମ ରାଜ୍ୟର ପ୍ରତିଜ୍ଞା ପାଇଁ ମୁଁ ପୁଣିଥରେ ପୃଥିବୀରେ ଜନ୍ମ ନେବାକୁ ଆସିଛି । (ଅଗାଢ଼ଥିଲେ)

ହରି—(ବୋଟ ଓଗାଳି) ଜନ୍ମ ନନେଲେ କଣ ଚଳିବନି ବାପୁଜୀ ?

ଗା: ଆ:—ଦୁଃଖ କଷ୍ଟରେ ପଡ଼ି ଗରିବ ଦୁଃଖୀରଙ୍କିମାନେ ମୋତେ ସ୍ମରଣ କରୁଛନ୍ତି । ମୁଁ ସ୍ୱର୍ଗରେ ମଧ୍ୟ ଶାନ୍ତିରେ ରହିପାରୁନି ।

ହରି—ଆଜିକାଲି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ– କେଉଁଠି ହେଲେ ଶାନ୍ତି

ନାହିଁ ବାପୁରା··· ସବୁ ସ୍ଥାନରେ ଅଶାନ୍ତି, ବିଶୃଙ୍ଖଳା, ଗଣ୍ଡଗୋଳ । ଅବଶ୍ୟ ଆପଣ ଜନ୍ମନେଲେ, ସରିଭଲ ହୁଅନ୍ତା । କିନ୍ତୁ ମୁଁ ନିରୁପାୟ···

ଗା: ଆ:—ନିରୁପାୟ ?

ହରି—ବର୍ତ୍ତମା'ନ ଆମ ଦେଶରେ ବାର୍ଥ କଣ୍ଟ୍ରୋଲ ହୋଇ ଯାଇଛି । ଆପଣ ମରିଗଲାପରେ, ଜନସଂଖ୍ୟାରୁ ଜଣେ କମିଛି । ପୁଣି ଜନ୍ମ ହେଲେ, ଜନ ସଂଖ୍ୟା ବଢିବ । ସେଥିପାଇଁ ସରକାରଙ୍କର ପର୍ମିସନ ଦରକାର ।

ଗା: ଆ:—ମୋ ପାଇଁ ପୁଣି ପର୍ମିସନ ?

ହରି—ଆଇନ କାନୁନ୍ ସମସ୍ତଙ୍କ ପାଇଁ ସମାନ ଆଜ୍ଞା- ତା ଛଡ଼ା ଆପଣ ବର୍ତ୍ତମାନ ସ୍ୱର୍ଗର ନାଗରିକ । ସ୍ୱର୍ଗର ପାସ୍‌ପୋର୍ଟ ଆଉ ମର୍ତ୍ତ୍ୟ ବା ଇଣ୍ଡିଆର ଭିସା ନେଇ ଆସିଛନ୍ତିତ ?

ଗା: ଆ:—ମୋ ପାଇଁ ସେ ସବୁ କଣ ଦରକାର ?

ହରି - ଦରକାର ଅଛି ଆଜ୍ଞା ! କ୍ଷମା କରିବେ । ପାସ୍‌ପୋର୍ଟ ନଥିଲେ, ମୁଁ ଆପଣଙ୍କୁ ଇଆଡ଼େ ଆଗଇବାକୁ ଦେବିନି । ବର୍ତ୍ତମାନ ମୁଁ ଡ୍ୟୁଟିରେ ଅଛି । ଗୁକିରୀ ଝଣ୍ଡିକ ମୋର ଗୋଲ ହୋଇଯିବ ।

ଗା: ଆ:—ହଉ, ମୁଁ ଏଇଠି ଅଛି । ତୁମେ ତମ ଉପର ହାକିମ· ଅବା ମନ୍ତ୍ରୀଙ୍କ ଠାରୁ ପର୍ମିସନ ନେଇଆସ ।

ହରି—ଏତେ ଶୀଘ୍ର କଣ ପର୍ମିସନ ମିଳିବ ସାର··· ବିନା ଭୋଗରେ ଆଜିକାଲି ପରା ଫାଇଲ ମୁଭ ହେଉନି···

ଘା: ଆ:···ମିଛ କଥା । ଶାସନ କଲ ଏତେ ଡଳକୁ···

ହରି···ଛାଡ଼ନ୍ତୁ ସାର··· ଆପଣଙ୍କ ପାଇଁ ଭୋଗ ମୁଁ ଦେଇଦେବି । ଆପଣ ଏଇଠି ଠିଆହେଇଥାନ୍ତୁ । ମୁଁ ଆସୁଛି··· (ଯୋଉଁ ଯାଉଁ ଅଟକି ଦୂରକୁ ଚାହିଁଛି) ହେଇତ ନେତା ନଟବର ବାବୁ ଆସି ଗଲେଣି । ଫଇସଲା ଏଇଠି ହୋଇଯିବ । (ଡ଼ାକିଛି) ଆସନ୍ତୁ ! ଆସନ୍ତୁ ନଟବର ବାବୁ ଆସନ୍ତୁ···

ନଟବର—(ପ୍ରବେଶ) କିହୋ ସିପାହୀ ବାବୁ- ଆଜି ବଡ଼ ବ୍ୟସ୍ତ ଥିଲାପରି ଜଣାପଡୁଛ କଥା କଣ ?

ହରି—( ଇସରାଦେଇ) ଚୁପ୍··· ଦେଖ ଭାରତର ଭାଗ୍ୟ ଆକାଶରେ ଉଜ୍ଜ୍ୱଳ ତାରକା । ଅକାଳରେ ଋତୁରାଜ ବସନ୍ତର ଆଗମନ । ମହାମାନବ ମହାତ୍ମା ଗାନ୍ଧି ଆମଦେଶରେ ଜନ୍ମ ନେବାକୁ ଆସିଛନ୍ତି ।

ନଟବର—ମିଛ କଥା ।

ହରି—ମିଛ ନୁହେଁ । ହେଇ ଦେଖ··· ସ୍ୱୟଂ ବାପୁଜୀ ଦଣ୍ଡାୟମାନ ।

ନଟବର—(ଦେଖି ଆଶଙ୍କାରେ) ସର୍ବନାଶ··· ଏଣିକି ଆମ ସମସ୍ତଙ୍କର ବିଜିନେସ ଡ଼ାଉନ··· ଆଉ ଖାଇବାକୁ ମିଳିବନି । ତୁମର । କିହା ପୋତେଇ, ମୋର ଟାଉଟରୀ, ସେଠଙ୍କର କଳା ବଜାରୀ ଆଉ ଚଳିବନି ।

ହରି—(ଛାନିଆରେ) ତା'ହେଲେ କଣ କରିବା ନଟବର ବାବୁ ?

ନଟବର—କରିବା କଣ··· ବୁଢ଼ାକୁ ବୁଝେଇ ଶୁଝେଇ ପୁଣି ସ୍ୱର୍ଗକୁ ପଠାଇ ଦେବା···

ହରି—ସେଇୟା କରନ୍ତୁ··· ବୁଢାଙ୍କୁ କେମିତି ହେଲେ ସ୍ୱର୍ଗକୁ ପଠାଇ ଦିଅନ୍ତୁ । ଯାଆନ୍ତୁ···

ନଟବର—ତୁମେ ବି' ଆସ । (ଗାନ୍ଧିଜିଙ୍କ ପାଖକୁ ଯାଇ) ଭକ୍ତର ଭୂମିଷ୍ଠ ପ୍ରଣାମ ଗ୍ରହଣ କରନ୍ତୁ ବାପୁଜୀ ! ଦୋଷା ଦୋଷ ମାଫ୍ କରନ୍ତୁ··· (ହରିକୁ ପ୍ରଣାମ କରିବାକୁ ଇସାରା ଦେଉଛି । ଓ ନିଜେ ଗାନ୍ଧିଜୀଙ୍କ ପାଦରେ ମୁଣ୍ଡ ଲଗାଇ ପ୍ରଣାମ କରିଛି । )

ଗା: ଆ:—(ଆଶୀର୍ବାଦ ଦେଇ) ଉଠ୍ ବତ୍ସ ! ତୁମ ଭକ୍ତିରେ ମୁଁ ଅତ୍ୟନ୍ତ ପ୍ରୀତ ।

ନଟବର—(ଉଠି) ଏତେ କଷ୍ଟକରି ଆପଣ କାହିଁକି ଆସିଲେ ବାପୁଜୀ ? ଆମକୁ ଖବର ଦେଇଥିଲେ ତ···

ଗା: ଆ:—ଆସିବାର ପ୍ରୟୋଜନ ଅଛି ବତ୍ସ··· ଅନ୍ତତଃ ଗରିବଙ୍କ ଦୁଃଖ ମୋଚନ ପାଇଁ···

ନଟବର—ଦେଶରେ ଆଉ କେହି ଗରିବ ନାହାଁନ୍ତି ବାପୁଜୀ– ଆମେ ଦେଶଙ୍କୁ ଗରିବ ହଟେଇ ସାରିଲୁଣି । ମୂଲିଆମାନେ ଏବେ ଦୈନିକ ପଚିଶ ଟଙ୍କା ମଜୁରି ପାଉଛନ୍ତି । ଭୂମିହୀନମାନଙ୍କୁ ଜମି ବଣ୍ଟା ଚାଲିଛି । ହରିଜନ, ଆଦିବାସୀମାନଙ୍କୁ ଗାଈବାଛୁରୀ, ଛେଳି, ମେଣ୍ଢା, ହଳବଳଦ ଆଦି ଲୋନ ଦିଆ ଯାଉଛି । ମାତ୍ର ଅକାଳ କୁଷ୍ମାଣ୍ଡ ଗୁଡ଼ାକ– ସବୁ ବିକି ଭାଙ୍ଗି ମଦ ପିଇ ଦେଉଛନ୍ତି । କିହୋ କହୁନ ସିପାହୀ ବାବୁ ?

ହରି—ଠିକ୍ କଥା ଆଜ୍ଞା....

ଗା: ଆ:—ସେଇଠି ରହିଛି ତ୍ରୁଟି । ଯାହା ଫଳରେ କି ସେମାନେ ମୋତେ ସ୍ମରଣ କରୁଛନ୍ତି···

ନଟବର—ଭକୁଆ, ହତଲକ୍ଷ୍ମୀ ଗୁଡ଼ାକୁ ଯେତେ ଉଠାଇଲେ– ଉଠୁନାହାନ୍ତି ବାପୁଜୀ ! ଆମେ କରିବୁ କଣ ? ଆପଣତ ଆସିଛନ୍ତି- ନିଜେ ଦେଖି ଯାଆନ୍ତୁ··· ଆମଦେଶରେ କିପରି ନିର୍ମଳ ଶାସନ ଚାଲିଛି । ଆମେସବୁ ଆପଣଙ୍କ ନୀତି, ଆଦର୍ଶକୁ ମାନି- ଦେଶ ଓ ଜାତିର ସେବାରେ ଲାଗି ପଡ଼ିଛୁ । କିହୋ ସିପାହୀ ହରିବାବୁ- କହୁନ ?

ହରି---ହଁ ବାପୁଜୀ ! ଆମଦେଶ ବହୁତ ଆଗେଇଛି । ଦେଶରେ ଆଜି କେହି ଅନାହାରରେ ମରୁନାହାନ୍ତି । ନାରୀ ଧର୍ଷଣ, ବଧୂହତ୍ୟା ଚୋରୀ ଡ଼କାଇତି, ଖୁନ୍ ଖରାପି– ସବୁ ଆଜ୍ଞା ! ବନ୍ଦ ହେଇ ଗଲାଣି ।

ଗା: ଆ:—ତା' ହେଲେ, ଦେଶରେ ଏତେ ଅଶାନ୍ତି, ବିଶୃଙ୍ଖଳା ଲାଗି ରହିଛି କାହିଁକି ?

ନଟବର—ଦେଶ ଭିତରେ ଗୁଡ଼ାଏ ଅସନ୍ତୁଷ୍ଟ ଗୋଷ୍ଠି ଅଛନ୍ତି ଆଜ୍ଞା······ କୌଣସି ଉନ୍ନତି ମୂଳକ କାମ କରାଇ ଦେଉ ନାହାନ୍ତି । ସେମାନଙ୍କ କଥା ଆପଣ ମୋଟେ ଶୁଣନ୍ତୁ ନାହିଁ । ସିଧା ସ୍ୱର୍ଗକୁ ପଳାଇଯାନ୍ତୁ । ସେଇଠି ରହି ଦେଖନ୍ତୁ– ଆମେ କ'ଣ କରୁଛୁ ।

ଗା: ଆ:—ପୃଥିବୀରେ ଜନ୍ମନେଇ ତୁମ ସହିତ ଦେଶ ଜାତିର ସେବା କରିବାକୁ ମୁଁ ପରମ ସୌଭାଗ୍ୟ ମନେ କରୁଛି······

ନଟବର—ଆପଣ ଜନ୍ମ ନେଲେ ଭଲ ହୁଅନ୍ତା ସେ ବାପୁଜୀ— କିନ୍ତୁ ବିପକ୍ଷ ଦଳର ଲୋକ ଗୁଡ଼ାକ, ଆପଣଙ୍କୁ ଆଉ ପୂର୍ବପରି ଇଜ୍ଜତ ଦେବେକି ନାହିଁ— ସନ୍ଦେହ । କିଛିଦିନ ତଳେ, ସେମାନେ ଆପଣଙ୍କନାରେ ଗୁଡ଼ାଏ ନେଷ୍ଟି ଏଲିଗେସନ ଆଣିଥିଲେ ।

ଗାଃ ଆଃ—ମୋ' ନାମରେ ପୁଣି ଏଲିଗେସନ ?

ନଟବର—ହଁ, ଆଜ୍ଞା ଆମେ ତାକୁ ଜୋର ଜବରଦସ୍ତ ଚପାଇ ଦେଇଛୁ ନା··· (ପଜ) ଆପଣ ଶୁଣିଥିବେ– ଋଷିଆରେ ଏବେ ଲେନିନ୍‌ଙ୍କୁ ଗାଳି ଦେଉଛନ୍ତି । ଫେଲିସ୍‌ଙ୍କ ପ୍ରତିମୂର୍ତ୍ତିକୁ ଜୋତାରେ ବାଡାଉଛନ୍ତି··· ଆଉ ଆମ ଦେଶରେ ଲୋକେ ଆମ୍ବେଦକରଙ୍କ ବେକରେ ପଚା ଜୋତାମାଳ ପିନ୍ଧାଉଛନ୍ତି ।

ଗାଃ ଆଃ—ମୋ ଦୃଷ୍ଟିରେ, ସେମାନେ ମଧ୍ୟ କ୍ଷମାର ପାତ୍ର ।

ହରି—ଠିକ୍ କଥା···

ନଟବର—ନାହିଁ ବାପୂଜୀ ! ଆପଣଙ୍କର ସେ ଦୟା, କ୍ଷମା, କରୁଣାର ଯୁଗ ଆଉ ନାହିଁ । ଆମେ ଏ ବିପକ୍ଷ ଦଳର ଲୋକଗୁଡ଼ାକୁ ଆଗ ସାବାଡ଼ ସାରୁଁ– ତାପରେ ଆପଣ ଜନ୍ମ ନେବେକି ନାହିଁ ଆମେ ଜଣାଇଦେବୁ ।

ହରି—ଠିକ୍ କଥା । ଆଗରୁ ଜନ୍ମ ନେବାଟା ମୋଟେ ଭଲ ନୁହେଁ ବାପୂଜୀ...

ଗାଃ ଆଃ—ତଥାପି, ଆସିଛି ଯେତେବେଳେ··· ମୋର ପ୍ରିୟ ହରିଜନ ଆଦିବାସୀ ଭାଇ ଭଉଣୀମାନଙ୍କୁ ଟିକିଏ ଦେଖିଯିବା ଉଚିତ ।

ନଟବର—ଯିବେ କେମିତି ? କରେଣ୍ଟ ସେଡିଂ ପ୍ରୋଗ୍ରାମ ଚାଲିଛି । ସହରଟିସାରା ପୂରା ଅନ୍ଧାର । ଚିହ୍ନି ନପାରି, କୋଉଠି ବିଲୁଆ କୁକୁର, ସାପ ବେଙ୍ଗ କାମୁଡ଼ି ଦେବେତ... କିହୋ କହୁନ ହରିବାବୁ ?

ହରି—ହଁ ଆଜ୍ଞା ! ଆମ ଦେଶର ଲୋକେ ଏବେ ଗାଈଗୋରୁ ନପୋଷି ବେଶି କୁକୁର ପୋଷୁଛନ୍ତି ! ଆଉ କୁକୁର ଗୁଡ଼ାକ ଏମିତି ଉତ୍ପାତ ହେଉଛନ୍ତି ଯେ'– ଆମେ ପରା ଡ୍ୟୁଟି କରିପାରୁନୁ..

ଗା: ଆ:—ଆଛା, ଏମିତି କଥା···

ନଟବର—ତେଣୁ ଆପଣ ଏତେ ହରବର ନହୋଇ ସିଧା ସ୍ୱର୍ଗକୁ ଫେରି ଯାଆନ୍ତୁ । ହରିଜନ ଆଦିବାସୀଙ୍କ କଥା ମୋଟେ ଚିନ୍ତା କରନ୍ତୁ ନାହିଁ । ସେମାନଙ୍କୁ ଆମେ ବହୁତ ଉପରକୁ ଉଠେଇ ଦେଲୁଣି । ସେମାନେ ସବୁ ପଇସା ବାଲା ହେଇ ଗଲେଣି ।

ହରି—ଭଲ ଖାଇଲେଣି, ଭଲ ପିନ୍ଧିଲେଣି । ପାଠଶାଠ ପଢି ଏବେ ଆଉ ଇନ୍ଦ୍ର ଚନ୍ଦ୍ର ମାନୁ ନାହାନ୍ତି । ଆପଣ ସିନା ତାଙ୍କପାଇଁ ବ୍ୟସ୍ତ - କିନ୍ତୁ ସେମାନେ ଆପଣଙ୍କୁ ପୂରାପୂରି ଭୁଲି ଗଲେଣି ।

ଗା: ଆ:—ହଉ, ଠିକ୍ ଅଛି । ତୁମ କଥାକୁ ବିଶ୍ୱାସକରି, ମୁଁ ଫେରି ଯାଉଛି··· (କିଛିବାଟ ଆଗେଇ ଚିନ୍ତା କରିଛନ୍ତି )

ହରି—ନଟବର ବାବୁ ! ସାରଙ୍କ ସାଙ୍ଗରେ ଚାଲୁନ ଆମେ ସ୍ୱର୍ଗକୁ ଯିବା··· ଜାଗାଟା କେମିତି, ଦେଖି ଆସିବା···

ଗା: ଆ:—ନାହିଁ ବନ୍ଧୁ ! ସ୍ୱର୍ଗକୁ ଯିବାପାଇଁ ତୁମର ବେଳ ହେଇନି । ତୁମେ ଦେଶ ଜାତିର ସେବାକର । ମୁଁ ଏକୁଟିଆ ଚାଲି- ଯାଉଛି । (ବାଡ଼ିକୁ ଆଶ୍ରାକରି କିଛିବାଟଯାଇ ଚିନ୍ତିତ । )

ନଟବର—ହରିବାବୁ ! ଅନ୍ତତଃ କର୍ତ୍ତବ୍ୟ ଦୃଷ୍ଟିରୁ- ଚାଲ ଆମେ ସାରଙ୍କୁ ସ୍ୱର୍ଗ ଦ୍ୱାରରେ ଛାଡ଼ିଦେଇ ଆସିବା···

ହରି—ତୁମେ ଯାଅ । ମୋର ପରା ଏଠି ଡ୍ୟୁଟି ଅଛି ।

ନଟବର—ଡ୍ୟୁଟି ପରେ କରିବ । ଶୁଣ··· (ଦୂରକୁ ଟାଣିନେଇ କାନ ପାଖରେ) ଜାଣି ପାରୁନ- ବୁଢା ଯେମିତି କଥାଭଷା କରୁଛି

ଆମେ ସାଥିରେ ନଗଲେ, ବୁଢା ସ୍ୱର୍ଗକୁ ନଯାଇ ଅଧା ବାଟରୁ ଫେରି ଆସିବ···

ହରି— ହଁ, ସେମିତି ଜଣାପଡୁଛି....

ନଟବର—ଚୁପ୍ , ଗ୍ଲ ବୁଢାକୁ ନେଇ ସ୍ୱର୍ଗଦ୍ୱାର ଏକ୍ସପ୍ରେସରେ ବସାଇ ଦେବା··· ଆଜ ଗାଡ଼ି ଛାଡ଼ିଲେ ଆମେ ଆସିବା– ନହେଲେ ବୁଢା ଗାଡ଼ିରୁ ଓହ୍ଲାଇ ପଡ଼ିବ···

ହରି—ଠିକ୍ କଥା, ବୁଢ଼ାକୁ ମୋଟେ ବିଶ୍ୱାସ ନାହିଁ···

ନଟବର—ଗ୍ଲ···

(ବାଦ୍ୟ ଯନ୍ତ୍ରରେ 'ବୈଷ୍ଣବ ଜନତୋ' ଭଜନର ସ୍ୱର ।)

ଉଭୟ— ଗ୍ଲନ୍ତୁ ବାପୁଜୀ । (ଦୁହେଁ ଗାନ୍ଧିଜୀଙ୍କ ଦୁଇ ବାହୁକୁ ନିଜନିଜର କାନ୍ଧ ଉପରେ ରଖି, ଚଲଇ ଚଲଇ ତାଙ୍କ ପ୍ରତିମୂର୍ତ୍ତି ପାଖକୁ ଆଣିଛନ୍ତି । ପୁନଶ୍ଚ ତାଙ୍କୁ ପୂର୍ବ ଆସ୍ଥାନ ଉପରେ ସ୍ଥାପନା ନକରି, ଅନ୍ତରାଳରେ ଛାଡ଼ିଦେଇ ଆସିଛନ୍ତି )

ନଟବର—(ହାତଝାଡ଼ି) ଓ ହୋଃ··· କଣ୍ଟା ଗଲ...

ହରି—ଆମେ ବଞ୍ଚିଗଲେ ନଟବର ବାବୁ...

ଉଭୟ—ମହା ବିପଦରୁ ବଞ୍ଚିଗଲେ ।

ନଟବର—ଆମ୍ଭେ ହେଲୁ ନେତା...

ହରି—ଆମ୍ଭେ ହେଲୁ ଦେଶବାସୀଙ୍କ ଧନ ଜୀବନ ରକ୍ଷାକର୍ତ୍ତା...

ଉଭୟ—ଆମ୍ଭେ ଏ ଦେଶର ଭାଗ୍ୟ ବିଧାତା··· (ହସିଛନ୍ତି)

(ଦୁହେଁ ଆନନ୍ଦରେ ଦାସକାଠିଆ ଗୀତ ଗାଉଛନ୍ତି । ନଟବର ଗାୟକ ଓ ହରି ମହାନ୍ତି ପାଳିଆ ହୋଇଛି ।)

(ଦାସକାଠିଆ ଗୀତ)

ନଟ—ଜ୍ୟୋତିଷ କହିଛି ମୁହିଁ ମନ୍ତ୍ରୀ ଗୋଟେ ହେବି ।

ହରି—ମୁଁ କଣ ହେବି ସାଙ୍ଗ ମୁଁ କଣ ହେବି ।

ନଟ—ତୁମକୁ ନିଶ୍ଚେ ମୁଁ ମୋର ପିଃ ଏଃ କରିଦେବି ।

ହରି—ଭେରୀଗୁଡ୍, ଭେରୀଗୁଡ୍— କରିବା ଆମେ ଲବି ।

(ଏହାପରେ ନଟବର ଗାଇଛି ଓ ହରି ମହାନ୍ତି ଶେଷପଦକୁ ପାଳି ଧରିଛି ।)

ଅବକାରୀ ବିଭାଗକୁ ହାତରେ ରଖିବି ।
ଗ୍ରାମେ ଗ୍ରାମେ ମଦ ମାଂସ ଭାଟି ଖୋଲିଦେବି ।
ରାତାରାତ୍ ତୋଳି ଦେବି କୋଠା ସାତ ତାଲା ।
ସାମନାରେ ଢାଳିଦେବି ବାଢ଼ିପଟ ମେଲା ।
ଘମଣ୍ଡ ବେଲେଗ୍ଣ ମୋର ହେବେ କୋଟିପତି ।
ଖୋଲିବ ଯେ' ମୁହଁ ତାର ହେବ ଦିବ୍ୟ ଗତି ।
ଜନତା ଉନ୍ନତି ନାମେ କାଟୁଥିବି ଫିତା ।
କାନ୍ଦୁଥିବି ଦେଶ ପାଇଁ କାଟୁଥିବି ଚିତା ।
( ଶେଷ ପଦରେ ହରି ଆଉ ପାଳି ଧରିବନି )
ଖାଇ ପିଇ ଦେଶଟାକୁ କରିଦେବି ସଫା ।
ଧରି ପାରିବନି ମୋତେ ଗାନ୍ଧି ନା' ତା' ବୋପା ।।

ହରି—(ଢମକପରେ) ରାମଯେ' ହରି ରାମଯେ'...
ନବୀନ ସୁନ୍ଦର ନବ ଦୁର୍ବାଦଳ ଶ୍ୟାମଯେ...

ଉଭୟ—ରାମ ଯେ' ହରି ରାମଯେ... ନବୀନ ସୁନ୍ଦର...
(ଇତ୍ୟାଦି ଗାଇ, ନାଚିନାଚି ଗ୍ଲଲି ଯାଇଛନ୍ତି । କୁବେର ଏସବୁ ସ୍ୱପ୍ନ ଦେଖୁଦେଖୁ ଚିତ୍କାର କରିଛି । )

କୁବେର—(ବାଉଳି ହୋଇ) ବନ୍ଦକର ! ବନ୍ଦକର... ଏହବୁ ଫାର୍ଶ ବନ୍ଦକର । (ବିଛଣାରୁ ଉଠି) ଶଠ, ଟାଉଟରଦଳ ଗଲେ କୁଆଡ଼େ... ( ଦୌଡ଼ିଯାଇଛି କିଛିବାଟ । )

ମାନସୀ—(ଝୁମ୍ପୁଡ଼ି ଭିତରୁ ବାହାରି) କଣ ହେଲା ବାପା ! କଣହେଲ...
ଏମିତି ବାଉଳି ହେଉଛ ଯେ... କଣ ସ୍ୱପ୍ନ ଦେଖିଲ ?

(ରାମ ଶ୍ୟାମ ଦୁହେଁ ଉଠି, ହାଇ ମାରି ଘର୍ଙ୍ଗମୋଡ଼ି ହୋଉଛନ୍ତି । )

କୁବେର—ବାପୁଜୀ ଆମର ଆସିଥିଲେ ଲୋ ମା'- ଟାଉଟର କଳା-ବଜାରୀ ଦଳ, ତାଙ୍କୁ ମିଛ କଥା କହି, ପୁଣି ସ୍ୱର୍ଗକୁ ପଠାଇ ଦେଲେ । ଆଉ ସେଇ ଖୁସିରେ ଏଇଠି ଏକ୍ଷଣି ସେମାନେ ନାଚକରୁଥିଲେ ।

ମାନସୀ—ସ୍ୱପ୍ନକଣ ସତ ହୁଏ ବାପା ?

କୁବେର—ମୋ ସ୍ୱପ୍ନ କେବେ ମିଛ ହେଇନି ଲୋ ମା'—ମୁଁ ଯାହା ସ୍ୱପ୍ନ ଦେଖୁଛି- ଏ ଦେଶରେ ତାହାହିଁ ଘଟି ଯାଉଛି...

ମାନସୀ—ତୁମେ ଏତେ କଥା ଚିନ୍ତା କରନା' ବାପା... ତୁମେ ଗ୍ଲହିଁଲେ କଣ ରାମରାଜ୍ୟ ଆସିଯିବ ?

କୁବେର—ହଉ ମା ! ମୋ ଗାମୁଛା ଆଉ ଫୁଲ ଗୁଙ୍ଗୁଡ଼ିଟା ଆଣ୍ ତ···

ମାନସୀ—ଆଣୁଛି ବାପା··· (ପ୍ରସ୍ଥାନ)

ରାମ—(ପାଖେଇ ଆସି) ତୁମେ ବାପା, ଏତେ ଜୋରରେ ଚିଲେଇଲ ଯେ- ଆମ ସମସ୍ତଙ୍କର ନିଦ ଭାଙ୍ଗିଗଲା···

ଶ୍ୟାମ—ସବୁ ଦିନତ ରାମ ରାଇଜର ସ୍ୱପ୍ନ ଦେଖୁଛ— ତୁମ କଥା କିଏ ଶୁଣୁଛି— କହିଲ ? ଲୋକେ ତୁମକୁ ପାଗଳ ବୋଲି ଭାବୁଛନ୍ତି ।

କୁବେର—(ହତାଶରେ) ହଉ, ଛାଡ ସେ କଥା । ସକାଳତ ହେଲାଣି । ଯାଅ, ନିଜନିଜର କାମ କର···

ମାନସୀ—(ଗାମୁଛା ଓ ଫୁଲ ଗୁଙ୍ଗୁଡ଼ି ଆଣି) ନିଅ ବାପା···

କୁବେର—ହଁ ମା··· (ଗାମୁଛା ଓ ଫୁଲ ଗୁଙ୍ଗୁଡ଼ି ଧରି) ମୁଁ ନଈରୁ ଆସୁଛି ବାପାମାନେ··· ( ବାହାରକୁ ପ୍ରସ୍ଥାନ)

ରାମ—(କୁବେର ବାଟକୁ ଚାହିଁ) ବାପାଙ୍କର କଣ ହେଉଛି ମାନୀ— ସବୁଦିନ ରାତିରେ କିଛିନା କିଛି ସ୍ୱପ୍ନ ଦେଖି, ବାଉଳି ହେଉଛନ୍ତି କାହିଁକି ?

ମାନସୀ—ତାଙ୍କ ପାଟି ଶୁଣି ମୋତେ ମଧ୍ୟ ଡ଼ର ଲାଗୁଛି ।

ଶ୍ୟାମ—ମୁଁ ଜାଣେ, ସେ କାହିଁକି ଏତେ ସ୍ୱପ୍ନ ଦେଖୁଛନ୍ତି ।

ରାମ—ତୁ ଜାଣିଛୁ ?

ଶ୍ୟାମ—ହଁ, ମୁଁ ଜାଣିଛି ।

ମାନସୀ—କଣ ଜାଣିଛ– କହିଲ ଶଙ୍କି···

ଶ୍ୟାମ—କହୁଛି··· (କିଛି ଦୂରଯାଇ) ମୁଁ ଜାଣିଛି ବାପାଙ୍କର ପୂର୍ବଜନ୍ମ କଥା ।

ରାମ—ବାପାଙ୍କ ପୂର୍ବ ଜନ୍ମ ?

ଶ୍ୟାମ—ଏ ଜନ୍ମରେ ବାପା ତାଙ୍କର ପୂର୍ବ ଜନ୍ମ କଥା ସ୍ୱପ୍ନ ଦେଖୁଛନ୍ତି—

ରାମ—ତୁ କେମିତି ଜାଣିଲୁ ?

ଶ୍ୟାମ—ବାପା ସେ ରିସର୍ଚ୍ଚ ଷ୍ଟୁଡ଼େଣ୍ଟ ମଧୁ ମିଶ୍ରଙ୍କୁ, ତାଙ୍କ ଜୀବନୀ କହୁଥିଲେ- ମୁଁ ଶୁଣିଛି ।

ମାନସୀ—କଣ ଶୁଣିଛ- ଆମକୁ କହିବନି ଶଙ୍କି ?

ରାମ—ଆଜି ପର୍ଯ୍ୟନ୍ତ ତୁ ଆମକୁ କହିନୁ ? ଏବେ କହ– ଆମ୍ଭେ ଶୁଣିବୁ ମୁଁ ଆଜି କାମକୁ ଯିବିନି···

ଶ୍ୟାମ—ପୂର୍ବଜନ୍ମରେ, ବାପାଙ୍କ ନାମଥିଲା– ବିପ୍ଳବୀ କୁମାର ନାୟକ । ଏ ଜନ୍ମରେ ସେ ହେଉଛନ୍ତି— କୁବେର ମୋଚି···

ରାମ—ତା' ହେଲେ, ବାପା ଥିଲେ ଜଣେ ବିପ୍ଳବୀ ?

ଶ୍ୟାମ—ସ୍ୱାଧୀନତା ସଂଗ୍ରାମୀ । (ମନେପକାଇ) ୧୯୪୨ ମସିହା ଅଗଷ୍ଟ ମାସର ଘଟଣା । ବାପା ଥାଆନ୍ତି ଜାତୀୟ କଂଗ୍ରେସ

ବଳର ଜଣେ ସକ୍ରିୟ ସଭ୍ୟ । ସାରା ଦେଶରେ ଭାରତ ଛାଡ଼ ଆନ୍ଦୋଳନ ଚାଲିଥାଏ···

ରାମ—ତା'ପରେ···

ଶ୍ୟାମ—କହୁଛି···(ପଳାଇ ଆସିଛି ପଛ କୋଣକୁ । ରାମ ଓ ମାନସୀ ତାକୁ ଫଲୋ କରିଛନ୍ତି ।)

ମାନସୀ—କୁହ ଭାଇ···

ଶ୍ୟାମ—କହୁଛି । ବସ···( ସମସ୍ତେ ପଛ କୋଣରେ ବସିଛନ୍ତି । )

ରାମ—ହଁ, ସାରା ଦେଶରେ ଭାରତ ଛାଡ଼ ଆନ୍ଦୋଳନ ଚାଲିଥାଏ-ତା'ପରେ···

ଶ୍ୟାମ—ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ, ସ୍ୱାଧୀନତା ସଂଗ୍ରାମୀ ଭାରତୀୟ-ମାନେ ମାତି ଉଠିଥାନ୍ତି । ଦେଶଟା ସାରା ସଭା ସମିତି, ପୋଡ଼ାଜଳା, ଭଙ୍ଗାରୁଜା ଆଦି ଆଇନ୍ ଅମାନ୍ୟ କାମ ଚାଲିଥାଏ । ଏରେଷ୍ଟ କରିବା ପାଇଁ ଫିରିଙ୍ଗି ପୋଲିସ ଖୋଜୁ-ଥାଏ ବାପାଙ୍କୁ ।

ମାନସୀ—ତା'ପରେ ଭାଇ ?

ଶ୍ୟାମ—ସେଦିନ ଘରେ ବାପା ନ ଥାନ୍ତି । ଏକୁଟିଆ ଥାଏ ହିରା ଅପା...

ରାମ—ହିରା ଅପା ?

ଶ୍ୟାମ—ବାପାଙ୍କ ସାନ ଭଉଣୀ ହିରାଅପା···

(ସମସ୍ତେ ଫ୍ରିଜ । ପଛ ସ୍କ୍ରୀନ ଅନ୍ଧାର ! ମଞ୍ଚ ଉପରେ ଆଲୋକ ବର୍ତ୍ତିକା– ଅତୀତ ଇତିହାସର ବାର୍ତ୍ତାବହ । )

## FLASH BACK

(ଯୁବକ କୁମାର ନାୟକ, ଖଦଡ଼ ପୋଷାକ ପିନ୍ଧି ଦ୍ରୁତ ପଦରେ ବାହାରୁ ଡ଼ାକି ଡ଼ାକି ପ୍ରବେଶିଛି । )

କୁମାର—ହିରା ! ହିରା– ଏ ହିରା···

ହିରା—(ଭିତରୁ) ଯାଉଛି ଭାଇ– ଯାଉଛି···

କୁମାର—ମୋ ଝୁଲା ମୁଣିଟା ଜଲଦୀ ନେଇ ଆ'ତ···

ହିରା—(ଭିତରୁ) ନେଉଛି ଭାଇ···

କୁମାର—ଆଣ, ଜଲଦୀ ଆଣ··· (ଛାନିଆଁରେ ଏଣେ ତେଣେ ଚାହିଁଛି )

ହିରା—(ଝୁଲାମୁଣି ଧରି ଆସିଛି) କଣ ହେଉଛି କ'ଣ ? [illegible] ହରବର ହେଉଛଯେ; (ବ୍ୟାଗ କାଢ଼ିଛି)

କୁମାର—(ବ୍ୟାଗଧରି) ଆମେ ଆଜି କଲେକ୍ଟର ଅଫିସରେ ନିଆଁ ଲଗାଇ ଦେଇଛୁ । ପୋଲିସ ଆମକୁ ଖୋଜୁଛି । ମୁଁ ଗୋଟାଏ ଗୁପ୍ତ ସ୍ଥାନକୁ ଚାଲିଯାଉଛି । ଯିଏ ପଚାରିଲେ କହିବୁ—ଭାଇ ଦୁଇ ଦିନ ହେଲା ଘରେ ନାହାଁନ୍ତି । ଘରଛାଡ଼ି କୁଆଡ଼େ ଯିବୁନି···

ହିରା—ହଁ, ଗଲ...

(କୁମାର ଗ୍ଲିଯାଇଛି । ହିରା ତା' ବାଟକୁ ଗ୍ହିଁ କେତେ କଣ ଚିନ୍ତା କରିଛି । )

କୁମାରସ୍ଵର—(ଅନ୍ତରାଳରୁ) ଇନକ୍ଲାବ୍...

ସମବେତସ୍ଵର—(ଅନ୍ତରାଳରୁ) ଜିନ୍ଦାବାଦ୍— ଜିନ୍ଦାବାଦ୍...

(ହିରା ପ୍ରମାଦ ଗଣିଛି । ପରମୁହୂର୍ତ୍ତରେ ସାଇକ୍ଲୋମାରେ ସେ ଦେଖିବାକୁ ପାଇଛି— ମୁକ୍ତି ସଂଗ୍ରାମୀଙ୍କ ଉପରେ ଇଂରେଜ ପୋଲିସର ଦମନ ଲୀଳା । କିଛି ସମୟପରେ ଉଭେଇ ଯାଇଛି ସେ ଦୃଶ୍ୟ । ହିରାମନରେ ଜାଗି ଉଠିଛି ଦେଶାତ୍ମବୋଧ ଭାବନା । ସେ ଗୀତ ଗାଉଛି ।)

ହିରା—( ଗୀତ )

କେବେ ଉଇଁବ ସ୍ଵାଧୀନ ରବି
ମୁଁହି ଦେଖିବି ମୋ ଦେଶ ଛବି ।
କେବେ ଶୃଙ୍ଖଳ ତା'ହେବ ଛିନ୍ନ—
ଦେଶ ହୋଇବ ମୋର ସ୍ଵାଧୀନ ।(ଘୋଷା)

ଏଇ ମାଟିରେ ମୋର ଜନମ
ପୁଣି ହେବ ତା'କୋଳେ ମରଣ ।
ତାର ସେବାରେ ଗଲେ ଜୀବନ—
ମୋର ଜନମ ହୋଇବ ଧନ୍ୟ । (୧)

ଶୁଣ ଶୁଣରେ ଫିରିଙ୍ଗି ଦଳ
ଆଉ କରନାରେ ଅତ୍ୟାଗ୍ଚର ।
ଛାଡ଼ି ଯାଅ ଏ ଭରତ ମାଟି
କରୁ ତୁମକୁ ଦୂରୁ ଜୁହାର ।। (୨)

(ଗୀତର ଶେଷ ବେଳକୁ ଇଂରେଜ ସିପାହୀ ବେଶରେ ହର ମହାନ୍ତି ପ୍ରବେଶିଛି )

ହର—ଏ, ଏ ଟୋକି ! ତୋ ଭଇ କାହିଁ ?

ହିରା—ସେ ଦୁଇଦିନ ହେଲା କୁଆଡ଼େ ଯାଇଛନ୍ତି– ମୁଁ ଜାଣିନି ।

ହର—ମିଛ କହନା ! କହ ତୋ ଭଇ କୁମାର ନାୟକ କୋଉଠି ଲୁଚିଛି ।

ହିରା—ସତ କହୁଛି ପୋଲିସ ବାବୁ ! ମୁଁ କିଛି ଜାଣିନି ।

ହର—ଜାଣିନୁ ନା ? ଚାଲ ଥାନାକୁ– ବଡବାବୁ ଡ଼ାକୁଛନ୍ତି ।

ହିରା—ମୁଁ କାହିଁକି ଥାନକୁ ଯିବି ? ମୁଁ ମଣିଷ ମାରିଛି ନା, ଚୋରି କରିଛି ।

ହର—ଚାଲ, ସେ କଥା ଥାନା ବାବୁଙ୍କୁ କହି ଦେଇ ଆସିବୁ ।

ହିରା—ଆପଣ କହି ଦେବେ ଯା'ନ୍ତୁ– ମୁ ଘରଛାଡ଼ି ଯାଇପାରିବିନି ।

ହର—ସେ ମୋକଥା ବିଶ୍ୱାସ କରିବେନି– ମୋ ଖିକିରୀ ଖାଇଦେବେ ଭଲରେ କହୁଛି– ଥାନାକୁ ଚାଲ । ନହେଲେ, ମୋତେ ବଳ ପ୍ରୟୋଗ କରିବାକୁ ପଡ଼ିବ ।

ହିରା—ଅନ୍ଧାରି ଶାସନତ ଚାଲିଛି । ଝିଅ ବୋହୁଙ୍କ ଉପରେ ବଳ ପ୍ରୟୋଗ କରିବେନି କାହିଁକି ?

ହର—ଭୂତଖାନା ଦେଖିଛୁଟି ? ନ ଦେଖିଥିଲେ, ଚାଲ ଥାନାଟା ଟିକିଏ ଦେଖି ଆସିବୁ ।

ହିରା—ହଉ, ଚାଲନ୍ତୁ···

ହର—ଭେରି ଗୁଡ଼··· ଆ– ଚାଲିଆ···

(ସିପାହୀ ଓ ହିରା ଚାଲି ଯାଇଛନ୍ତି । କିଛି ସମୟପରେ ଶୁଣାଯାଇଛି ପେଚକର ସ୍ୱର, ଛେଳିର ଚିତ୍କାର ଓ ବାଘର ଗର୍ଜନ କରୁଣ ସଂଗୀତ ସହ ସାଇକ୍ଲୋମାରେ ଦେଖାଯାଉଛି– ହିରାକୁ ପୋଲିସ ଇନ୍‌ସପେକ୍ଟରଙ୍କର ଅମାନୁଷିକ ଧର୍ଷଣ । କିଛି ସମୟ ପରେ ଲିଭେଇ ଯାଇଛି ସେ ଦୃଶ୍ୟ । ହରବରରେ ଆସିଛି କୁମାର ।)

କୁମାର—(ଡ଼ାକିଡ଼ାକି ଆସିଛି) ହିରା ! ହିରା-ଏ ହିରା... (ଉତ୍ତର ନପାଇ) ଘରେ ନାହିଁନା କଣ ? (ଗୁରିଆଡ଼କୁ ଲକ୍ଷ କରି ଡ଼ାକିଛି) ହିରା, ହିରା– ହିରା··· କୁଆଡ଼େ ଆଉ ଗଲା ? ତାକୁ ନେଇ ମାଉସୀ ଘରେ ନଛାଡ଼ିଲେ- ମୁଁ କଲିକତା ଯିବି କେମିତି ? ପାଣି ପାଇଁ ନଇକୁ ଯାଇଛି ନାଁ କଣ··· (ଭିତର ଆଡ଼କୁ ଯାଇ, ଦୂରକୁ ଗୁହିଁଛ)

ହିରା—(ମୁକୁଳା କେଶ, ଶାଢୀର ଛିଡ଼ା ପଣତ କାନୀକୁ ଭୂଇଁରେ ଲୋଟାଇ କାନ୍ଦି କାନ୍ଦି ଆସିଛି)

କୁମାର—(ଦେଖି) ହିରା !!! କଣ ହେଲା ତୋର ? କଣ ହେଲା

ହିରା—(କୁମାରକୁ ଧରି କୋରରେ କାନ୍ଦିଛି ।) ଭାଇ···

କୁମାର—କଣ ହେଲା କହ ? ତୁ ନ କହିଲେ– ମୁଁ ଜାଣିବି କେମିତି ?

ହିରା—ପୋଲିସ ବାଲା ମୋର ସର୍ବସ୍ୱ ଲୁଟି ନେଲେ ଭାଇ- ସର୍ବସ୍ୱ ଲୁଟିନେଲେ···

କୁମାର—କଣ କହିଲୁ ? ତୁ ଥାନାକୁ ଗଲୁ କାହିଁକି– (ବାଡ଼େଇଛି)

ହିରା—(ବିକଳରେ) ଭାଇ ! ଭାଇ-ଭାଇ···

କୁମାର—କୁଆଡ଼େ ଯିବୁନି ବୋଲି ମୁଁ ତୋତେ ମନା କରିଥିଲିନାଁ ?

ହିରା—ତୁମକୁ ନ ପାଇ, ଥାନା ସିପାହି ଆସି ମୋତେ ନେଇଗଲା...

କୁମାର—ଆଚ୍ଛା··· (ରାଗି ଝୁଲମୁଣି ଫିଙ୍ଗିଦେଇ) ହାରାମଜାଦା ପୋଲିସବାଲାଙ୍କୁ ଯଦି ମୁଁ ଆଜି ଶେଷକରି ନ ଦେଇଛି ମୋ ନାଁ, କୁମାର ନାୟକ ନୁହେଁ···(ଦ୍ରୁତ ପଦରେ ଫାର୍ଶା ଆଣିବାକୁ ଭିତରକୁ ଦୌଡ଼ିଛି ।)

ହିରା—ଭାଇ ! ଭାଇ-ଭାଇ (ପରିସ୍ଥିତି କଳ୍ପନା କରି କାନ୍ଦିଛି)

କୁମାର—(ଫାର୍ଶା ଧରିଆସି) ଇଂରେଜମାନଙ୍କ ଅଇଁଠାଖିଆ କୁକୁରଦଳ ଦେଖିବି ଆଜି କିଏ ତୁମକୁ ରକ୍ଷା କରିବ··· (ଗ୍ଲିଯାଉଥିଲା)

ହିରା—ଭାଇ ! ଭାଇ···(ପଛରୁ ଗୋଡ଼ ଧରି ପକାଇ) ତୁ ଯାଆନା ଭାଇ··· ତୁ ଯାଆନା । ତୁ ତାଙ୍କର କିଛି କରିପାରିବୁନି । ତାଙ୍କ ହାତରେ ବନ୍ଧୁକ ଅଛି । ସେମାନେ ତୋତେ ମାରିଦେବେ ଭାଇ— ମାରିଦେବେ··· (କାନ୍ଦିଛି)

କୁମାର—ମୁଁ ମରିବିପଛେ— ଶଳାଙ୍କୁ ଆଜି ହାଣି ଚିକିଚିକି କରିଦେବି । ଛାଡ଼୍, ତୁ ମୋତେ ଛାଡ଼— ଛାଡ଼··· (ହିରାକୁ ଗୋଡ଼ରେ ଠେଲିଦେଇ ଚାଲିଯାଇଛି )

ହିରା—ଭାଇ··· ତୁ ଯାଆନା ଭାଇ- ତୁ ଯାଆନା··· ତୁ ଯାଆନା... (କୁମାରର ବାଟକୁ ଚାହିଁ ଦୁଃଖରେ ଭାଙ୍ଗି ପଡ଼ିଛି । ହାତ ଯୋଡ଼ିଛି ଭଗବାନଙ୍କୁ) ହେ ଭଗବାନ ! ମୁଁ କ'ଣ କରିବି ? ଫିରିଙ୍ଗ ପୋଲିସ ଗୁଡ଼ାକ ମଣିଷ ନୁହଁନ୍ତି– ଜାନୁଆର ତାଙ୍କର ଦୟାଧର୍ମ ନାହିଁ । ମୋ ଜୀବନକୁତ ନଷ୍ଟ କରି ଦେଲେ– ମୋ ଭାଇକୁ ହାଜତରେ ପୁରାଇ, ପିଟିପିଟି ମାରିଦେବେ— ପିଟିପିଟି ମାରିଦେବେ । ସେମାନେ ମଦ ଖାଇ, ରାକ୍ଷସ ବନିଯାଇଛନ୍ତି··· ମୁଁ କଣ କରିବି ? କଣ କରିବି··· (କଳ୍ପନା କରିଛି ପୋଲିସର ଅତ୍ୟାଚାର)

## THOUGHT OF HIRA

(ହିରା ଉପରୁ ଆଲୋକ ଲିଭିଯାଇ, ପଡ଼ିଛି ମଞ୍ଚର ଦକ୍ଷିଣ କୋଣରେ । ପୋଲିସ ଇନସପେକ୍ଟର ମଙ୍ଗରାଜ କୁମାରକୁ ହାଜତ ଭିତରୁ ବାଡ଼େଇ ବାଡେଇ ବାହାରକୁ ଆଣିଛି । କୁମାର ଯନ୍ତ୍ରଣାରେ ଅଧିର ।)

କୁମାର—ଓଃ, ଆ··· ଆଃ··· ମରିଯିବି ବାବୁ ! ମରିଯିବି··· ମୋତେ ଛାଡ଼ି ଦିଅନ୍ତୁ– ମୋତେ ଛାଡ଼ି ଦିଅନ୍ତୁ... ଆପଣ ମୋ ଭଉଣୀର ଇଜ୍ଜତ ନେଇଛନ୍ତି ବୋଲି ମୁଁ କାହାକୁ କହିବିନି– କେଉଠି କହିବିନି...

ମଙ୍ଗରାଜ—କୋଉଠି କହିବୁନିତ ?

କୁମାର—ନାହିଁ ହଜୁର ! ମୁଁ କୋଉଠି କହିବିନି– ଆପଣ ମୋତେ ଛାଡ଼ି ଦିଅନ୍ତୁ ।

ମଙ୍ଗରାଜ—ଛାଡ଼ିଦେବିନାଁ ? ଶାଲା କମିନାଇ··· ମୁଁ ଥାନାରେ ନଥିଲେ ତ, ତୁ ଆଜି ମୋ ସିପାହିମାନଙ୍କୁ ହାଣିଦେଇଥାନ୍ତୁ– ତୋତେ ମୁଁ ଛାଡ଼ିଦେବି···(ଗୁଡ଼େଇ ତୁଡେଇ ବାଡ଼େଇଛି)

କୁମାର—(ଯନ୍ତ୍ରଣାରେ) ମରିଯିବିସାର–ମରିଯିବି··· ମରିଯିବି···ମୋତେ ଛାଡ଼ି ଦିଅନ୍ତୁ– ମୋତେ ଛାଡ଼ି ଦିଅନ୍ତୁ···

ମଙ୍ଗରାଜ—ଚୁପ୍‌ଶାଳା ! ଚୁପ୍··· ଚାଲ ହାଜତକୁ ଚାଲ···

କୁମାର—ଯାଉଛି ସାର– ଯାଉଛି– ଯାଉଛି···

ମଙ୍ଗରାଜ—ଚାଲ, କଇଦୀ ଚାଲ···

(କୁମାରକୁ ବାଡ଼େଇ ହାଜତକୁ ନେଇ ଯାଉଛି)

   

THOUGHT OF HIRA IS OVER

ହିରା ଉପରେ ଲାଇଟ ପଡ଼ିଛି । ହିରା ଫୁଙ୍କି ଭଙ୍ଗି କାନ୍ଦି ଉଠିଛି)

ହିରା—(ବ୍ୟାକୁଳ ହୋଇ) ଭାଇ ! ଭାଇ··· ମୁଁ ଆଉ କାହିଁକି ବଞ୍ଚି ରହିବି ଭାଇ··· ଆଉ କାହିଁକି ତୋତେ କଳଙ୍କିନି ମୁହଁ ଦେଖାଇବି ? ତୁ ମୋର ଶବ ଦେଖିଲେ ବରଂ ଖୁସିହେବୁ ଭାଇ··· ଖୁସି ହେବୁ··· ହଁ ହଁ ଖୁସିହେବୁ···

(ହିରା ଦ୍ରୁତ ପଦରେ ଭିତର ଆଡ଼କୁ କାନ୍ଦି କାନ୍ଦି ଦୌଡ଼ିଛି କିଛି ସମୟପରେ ସାଇକ୍ଲୋମା ସିନ୍‌ରେ ହିରା ଖଟରେ ଫାଶୀ ଲଗାଇ ଝୁଲି ପଡ଼ିବାର ଦୃଶ୍ୟ ଦେଖାଯାଉଛି । ମଞ୍ଚର ଦକ୍ଷିଣ କୋନ୍‌ରେ ଚାଲିଛି ଅଦାଲତର ପ୍ରସ୍ତୁତି ।)

## ଅଦାଲତ (COURT)

(ଇଂରେଜ ଜଜ୍ ଷ୍ଟିଫେନସନ ବସିଛି । ପଛପଟରେ ତାର ଅନ୍ଧ କାନୁନର ନିକିତି ଧାରୀ ପ୍ରତିକ । କାଠ ଗଡାରେ କୁମାର । ତା'ପାଖରେ କୋର୍ଟ ଇନ୍ସପେକ୍ଟର ଘର୍ବରେ ମଦ୍ଧରାଜ ଦଣ୍ଡାୟମାନ । ସାମ୍ନାରେ କୁମାର ପକ୍ଷ ଓକିଲ ଦଣ୍ଡପାଣି ଓ ସରକାରୀ ପକ୍ଷ ଓକିଲ ଥୋମାସ ମଧ୍ୟରେ ଯୁକ୍ତିତର୍କ ଚାଲିଛି ।

ଷ୍ଟିଫେନ୍ସନ—(ହାମର ବାଡ଼େଇ) ଅର୍ଡ଼ର... ଅର୍ଡ଼ର···

ଥୋମାସ—ଆପଣ କିଛି ଜାଣନ୍ତି ନାହିଁ ।

ଦଣ୍ଡପାଣି—ଆପଣ କିଛି ଜାଣନ୍ତି ନାହିଁ ।

ଥୋମାସ—(ରାଗରେ ଗର୍ଜି) ଆପଣ କିଛି ଜାଣନ୍ତି ନାହିଁ- କିଛି ଜାଣନ୍ତି ନାହିଁ । ୟୁ ନୋ, ନଥିଙ୍ଗ୍ସ୍

ଷ୍ଟିଫେନ୍ସନ—(ହାମାର ବାଡେଇ) ଅର୍ଡର-ଅର୍ଡର....

ଥୋମାସ—ୟୋର ଅନର ! ମୁଁ ପ୍ରମାଣ ପାଇଛି- ଦେଶଦ୍ରୋହୀ କୁମାର ନାୟକର ଭଉଣୀ ହିରାବାଇର ପ୍ରଫେସନ ଥିଲା ବେଶ୍ୟା ବୃତ୍ତି ।

କୁମାର—ମିଛ କଥା ଜଜ୍ସାହେବ- ମୋ ଭଉଣୀ ହିରା ଥିଲା ପବିତ୍ର-ତୁଳସୀ ପରି ପବିତ୍ର··· ହେଇପାରେ ଏ ସରକାରୀ ଓକିଲ ଥୋମାସର ଭଉଣୀ ଗୋଟାଏ ବେଶ୍ୟା···

ଥୋମାସ— (ରାଗି) ୟୁ ସ୍କାଉଣ୍ଡ୍ରେଲ···

ଷ୍ଟିଫେନସନ—(ହାମାର ବାଡ଼େଇ) ଅର୍ଡ଼ର–ଅର୍ଡ଼ର...

ଦଣ୍ଡପାଣି—ୟୋର ଅନର ! ମିଷ୍ଟର ଥୋମାସ ସମ୍ପୂର୍ଣ୍ଣ ମିଥ୍ୟା ଓ ମନଗଢ଼ା କଥା କହୁଛନ୍ତି । ମୋ ମକ୍କେଲର ଇଜ୍ଜତ ଉପରେ ଆଞ୍ଚ ଆସୁଛି

କେଶ୍‌ର ଗ୍ରାଭିଟି ଡ୍ରାଇଭର୍ଟ ହେଇ ଯାଇଛି ।

ଷ୍ଟିଫେନସନ—ଲେଟ ହିମ୍ ଷ୍ଟିକ୍...

ଥୋମାସ—ୟୋର ଅନର ! ବେଶ୍ୟା ବୃତ୍ତି ଅପରାଧରେ ହିରା ବାଇକୁ ପୋଲିସ ଗିରଫ କରିଥିଲା । ହିରା ବାଇ ମୌକା ଦେଖି ଥାନା ହାଜତରୁ ଫେରାର ହୋଇଗଲା ଏ ଦେଶ ଦ୍ରୋହୀ କୁମାର ନାୟକ ତାର ତର୍ଣ୍ଣି ଚିପି, ତାକୁ ଗଛରେ ଟାଙ୍ଗି ଦେଇଥିଲା ।

ଦଣ୍ଡପାଣି—ଆଇ ଅବଜେକ୍ଟ ୟୋର ଅନର... ହିରା ବେଶ୍ୟା ନଥିଲା– କି' କୁମାର ନାୟକ ତାକୁ ଖୁନ୍ କରି ନ ଥିଲେ । ପୋଲିସ ତାକୁ ଥାନାକୁ ଡ଼ାକିନେଇ ରେପ୍ କରିଥିଲେ । ଲଜ୍ଜା ଅପମାନ ସହି ନ ପାରି, ସେ ନିଜେ ଫାଶୀ ଦେଇ ମରିଛି । ତାର ମୃତ୍ୟୁ ପାଇଁ ଦାୟୀ ଇନସପେକ୍ଟର ମର୍ଦ୍ଦରାଜ– କୁମାର ନାୟକ ନୁହେଁ...

ଥୋମାସ—ୟୋର ଅନର... ମୁଁ ପ୍ରମାଣ ଦେବି– କୁମାର ନାୟକ ଜଣେ ପ୍ରଫେସନାଲ ଖୁନୀ ଆସାମୀ । ହିରା ବାଇକୁ ସେ ତର୍ଣ୍ଣି ଚିପି ହତ୍ୟା କରିଛି । ହିରା ବାଇର ଗଳାରେ ଯେଉଁ ଆଙ୍ଗୁଠି ଚିହ୍ନ ଥିଲା– ତାହା ହେଉଛି– ଏଇ କୁମାର ନାୟକର । ପ୍ରମାଣ ସ୍ୱରୂପ– ଏଇ ଦେଖନ୍ତୁ ଫିଙ୍ଗର ପ୍ରିଣ୍ଟ ଓ ପୋଷ୍ଟ ମଟମ ରିପୋର୍ଟ । (ଜଜ୍‌ଙ୍କ ସାମନାରେ ଫିଙ୍ଗର ପ୍ରିଣ୍ଟ ଓ ପୋଷ୍ଟ ମଟମ ରିପୋର୍ଟ ଦାଖଲ କରିଛି ।)

ଷ୍ଟିଫେନସନ—ଭେରି ଗୁଡ୍... (ରିପୋର୍ଟ ପଢ଼ିଛି ।)

କୁମାର—ସେସବୁ ମିଛ ଧର୍ମାବତାର– ସବୁ ମିଛ । ମୋ ବିରୁଦ୍ଧରେ ପୋଲିସର ଏ ଗୋଟିଏ ହୀନ ଚକ୍ରାନ୍ତ । କାରଣ ମୁଁ ଜଣେ ସ୍ୱାଧୀନତା ସଂଗ୍ରାମୀ ଆଉ ପୋଲିସ ବାବୁମାନଙ୍କ ଦ୍ୱାରା

ଗଣଧର୍ଷିତା ହିରାର ବଡ଼ ଭଉ । ମୁଁ ନ୍ୟାୟ ଗୁହେଁ ଧର୍ମା-
ବତାର- ମୁଁ ନ୍ୟାୟ ଗୁହେଁ···

ଷ୍ଟିଫେନସନ—ତୁମେ ନିର୍ଦ୍ଦୋଷ ବୋଲି ପ୍ରମାଣ ଦିଅ···

ଦଣ୍ଡପାଣି—ଯୋର ଅନର ! ମୋତେ ଗୋଟିଏ ସପ୍ତାହ ସମୟ ଦିଅନ୍ତୁ !
ମୁଁ ହିରାର ମୃତ୍ୟୁ ରହସ୍ୟ ଉପନ କରିଦେବି । ଅସଲି
କ୍ରିମିନାଲଙ୍କୁ ଆପଣଙ୍କ ଦରବାରରେ ହାଜର କରିଦେବି ।

ଷ୍ଟିଫେନସନ—ଆଇ ଏମ୍ ସରୀ ମିଷ୍ଟର ଲୟର– ନୋ' ଟାଇମ୍ ଇଜ୍
ଆଲାଉଡ୍··· (ରାୟ ଲେଖିଛି)

ଦଣ୍ଡପାଣି—ମେନି ଥ୍ୟାଙ୍କ୍ସ ଫର ୟୋର କାଇଣ୍ଡନେସ୍ । (ସ୍ୱାଗତ)
ମୁଁ ଜାଣେ– ମୁକ୍ତି ସଗ୍ରାମୀ ଭରତୀୟମାନଙ୍କୁ ନ୍ୟାୟମିଳିବା
ଅସମ୍ଭବ । ଗୁଲୁ- କେତେଦିନ ଗୁଲୁଛି ଏ ଅନ୍ଧାରୀ ଶାସନ...

ଷ୍ଟିଫେନସନ—ଅର୍ଡର, ଅର୍ଡର···

ସମସ୍ତେ—(ନିରବରେ ଜଜ୍ ଆଡ଼କୁ ଗୁହିଁଛନ୍ତି । )

ଷ୍ଟିଫେନସନ—(ରାୟ ପଢ଼ିଛି) କୁମାର ନାୟକ ସପକ୍ଷରେ ବଳିଷ୍ଠ ପ୍ରମାଣ
ନଥିବାରୁ, ଥାନା ଆକ୍ରମଣ ଓ ହିରାବାଇର ହତ୍ୟା ଅପରାଧରେ
କୁମାର ନାୟକକୁ ଦୋଷୀ ସାବ୍ୟସ୍ତ କରାଗଲା । ଭରତୀୟ
ପିଙ୍ଗଲ କୋଡ ୩୦୨ ଧାରା ଅନୁସାରେ, ଖୁନୀ ଆସାମୀ
କୁମାର ନାୟକକୁ ଫାଶୀ ଦଣ୍ଡରେ ଦଣ୍ଡିତ କରାଗଲା । ହି'
ଉଇଲ ବି' ହେଙ୍ଗ୍ଡ ଟିଲ ଡ଼େଥ୍···

କୁମାର—(କାର୍ଦ୍ଦିଉଠି) ଧର୍ମାବତାର··· ଏଇକଣ ତୁମ ନ୍ୟାୟ ବିଗ୍ରର···
(ଭଙ୍ଗି ପଡ଼ିଛି)

ଷ୍ଟିଫେନସନ—( ରାୟ ସିଟ୍ ଥୋଇ ଖୁଲିଯାଇଛି । )

ଦଣ୍ଡପାଣି— (ପାଖେଇ ଆସି) କାନ୍ଦନା କୁମାର– କାନ୍ଦନା··· ଏଇଟା
ଅଦାଲତ ନୁହେଁ, ଏଇଟା ଫିରିଙ୍ଗ୍ କଂସେଇ ଖାନା···

(କୁବେର ପିଠିରେ ହାତମାରି, ଆଖିରୁ ଲୁହ ପୋଛି ଚାଲି ଯାଇଛି)

(ସେମାନେ ଚାଲିଯାଇଛନ୍ତି । କୁମାର ହାତରେ ହାତକଡ଼ା ପିନ୍ଧାଇ କୋର୍ଟ ଇନ୍‌ସପେକ୍ଟର ନେଇ ଯାଉଛି )

⌘ ⌘ FLASH BACK OVER ⌘ ⌘

(ଆଲୋକ ପଡ଼ିଛି ପଛ କୋଣରେ । ରାମ, ଶ୍ୟାମ ଓ ମାନସୀ ଫୁଲ ଧରି, ସ୍ୱାବସ୍ଥାକୁ ଆସିଛନ୍ତି )

ରାମ—ବାପା ତା'ହେଲେ, ବିନା ଦୋଷରେ ଫାଶୀ ପାଇଲେ···

ଶ୍ୟାମ—ହଁ ଉପର କୋର୍ଟରେ ଅପିଲ କରିବାକୁ ବାପାଙ୍କର କେହି ଲୋକ ନଥିଲେ– କି ପଇସା ନଥିଲା । ୧୯୪୩ ମସିହା ଜାନୁଆରୀ ମାସରେ ବାପାଙ୍କୁ ସେଣ୍ଟ୍ରାଲ ଜେଲରେ ଫାଶୀ ଦିଆଗଲା । ତାଙ୍କ ଘରବାଡ଼ି ସବୁ ନିଲାମ ହୋଇ ଗଲା... ସେ ବର୍ଷ ବାପାଙ୍କପରି ଅନେକ ସଂଗ୍ରାମୀ ଶହୀଦ ହେଲେ ।

ମାନସୀ—ସେତେବେଳେ ଭାରତ ସ୍ୱାଧୀନତା ସଂଗ୍ରାମୀଙ୍କ ଉପରେ ଏମିତି ଅତ୍ୟାଚାର ହେଉଥିଲା ?

ଶ୍ୟାମ—ଭାଗ୍ୟକୁ ବାପୁଜୀଙ୍କ ସତ୍ୟ, ଅହିଂସା ବଳରେ ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ ଦେଶ ହେଲା ସ୍ୱାଧୀନ । ବାପାଙ୍କର ଅବିନାଶୀ ଆତ୍ମା, ଅନେକଦିନ ଘୂରିଘୂରି, ପୁଣି ଜନ୍ମ ନେଲା ଏଇ ଭାରତ ମାଟିରେ । ଏବେ ରାସ୍ତା କଡ଼ରେ ବସି ଯୋତା ପାଲିସ କରିବା ଛଡ଼ା, ବାପାଙ୍କର ଅନ୍ୟ ଉପାୟ ନାହିଁ । ପୂର୍ବ ଜନ୍ମର ବିପ୍ଲବୀ କୁମାର ନାୟକ– ଏବେ ଆମର ବାପା କୁବେର ମୋଚି । ତାଙ୍କ ପୂର୍ବ ଜନ୍ମର କଥାଗୁଡ଼ାକୁ ନିଇତି ସେ ସ୍ୱପ୍ନ ଦେଖି, ବାଉଳି ହେଉଛନ୍ତି ।

**ମାନସୀ**—ଆଉ କିଛା ଅପା ?

ଶ୍ୟାମ—ତାଙ୍କ ତ ବାପା ଅନେକ ଥର ସ୍ୱପ୍ନ ଦେଖିଲେଣି । ତାଙ୍କ ପ୍ରେତାତ୍ମା ଏଇ ନଈ କୂଳରେ କୁଆଡ଼େ ଘୂରି ବୁଲୁଛି...

ରାମ—ଛାଡ଼, ସେ ସବୁ ଗପି କିଛି ଲାଭ ନାହିଁ । ଚୁ ଗଲୁ ମାନୀ ! ମୋତେ କ'ଣ ଖାଇବାକୁ ଦେବୁ ମୁଁ କାମକୁ ଯିବି ।

ମାନସୀ—ଦେଖେଁ କଣ ଅଛି.... (ଉଠି ଝୁମ୍ପୁଡ଼ି ଭିତରକୁ ଯାଇଛି)

ରାମ—ବୁଝିଲୁ ଶ୍ୟାମ ! ବାପା ଯଦି ଦୁଇ ଅକ୍ଷର ପାଠ ପଢି ଥା'ନ୍ତେ ନା... ନିଜେ ତାଙ୍କ ଜୀବନ ଇତିହାସ ଲେଖି ପକାନ୍ତେ...

ଶ୍ୟାମ—ରହିବାକୁ ଘର, ଖାଇବାକୁ ଦାନା ନାହିଁ– ସେଥିରେ ପୁଣି ପାଠ...

ମାନସୀ—(ଝୁମ୍ପୁଡ଼ି ଭିତରୁ ଆସି) କିଛି ନାହିଁ ଭଇ– କଣ ଖାଇବ ? ତୁମେ ଦୁହେଁ ବସିଥାଅ– ମୁଁ ଆସୁଛି ସେଠ ଘରୁ ..

ରାମ—ମାନୀ ମୋତେ ଗ୍ଲାସେ ପାଣି ଦେଇ ଯାଉ...

ମାନସୀ—ଆଣୁଛି .. (ପୁଣି ଝୁମ୍ପୁଡ଼ି ଭିତରକୁ ଯାଇଛି)

(ରାମ ଶ୍ୟାମ ବସିଛନ୍ତି । କୁବେର ଗାଧୋଇ ଫୁଲ ଗୁଙ୍ଗୁଡ଼ି ଧରି, 'ରାମହରି' ଜପ କରିକରି ଆସିଛି )

କୁବେର—ରାମରାମ ହରିହରି–ରାମରାମ ହରିହରି... ରାମରାମ... ଫୁଲ ଗୁଙ୍ଗୁଡ଼ି ଥୋଇ ଗାମୁଛା ଶୁଖାଇଛି । ମାନସୀ ପାଣି ଗ୍ଲାସେ ଆଣି ରାମ ପାଖରେ ଥୋଇ କୁବେର ପାଖକୁ ଆସିଛି)

ମାନସୀ—ମୁଁ ସେଠ ଘରୁ ଆସୁଛି ବାପା...

କୁବେର—ରହ ମା ! ଆଜିପରା ଗାନ୍ଧି ଜୟନ୍ତି– ଆମେ ତାଙ୍କ ଜୟନ୍ତି ପାଳିବାନି ? (ଫୁଲ ଗୁଙ୍ଗୁଡ଼ି ଧରିଛି)

ମାନସୀ—ହଁ ବାପା .. (ରାମଶ୍ୟାମ ପ୍ରତି) ରାମଭଇ– ଶ୍ୟାମଭଇ ... ଆସ, ପୁଷ୍ପାଞ୍ଜଳି ଦେବ ଆସ....

(ରାମଶ୍ୟାମ ଉଠିଆସିଛନ୍ତି । କୁବେର ସମସ୍ତଙ୍କ ହାତରେ

ଫୁଲଦେଇ ନିଜେ ଫୁଲ ଧରିଛି । "ରଘୁପତି ରାଘବ ରଜାରାମ" ଆଦି ରାମଧୂନ ଗାଇ, ଗାନ୍ଧି ମୂର୍ତ୍ତିର ଘୁରିପଟେ ବୁଲି, ତାଙ୍କ ପାଦରେ ସମସ୍ତେ ପୁଷ୍ପାଞ୍ଜଳି ଦେଇ ପ୍ରଣାମ କରିଛନ୍ତି )

କୁବେର—ଏଥର ଯାଅ ବାପାମାନେ– ନିଜନିଜର କାମ କର—

ମାନସୀ—ମୁଁ ସେଠ ଘରୁ ଆସୁଛି ବାପା ?

କୁବେର—ହଁ ମା ! ଯା··· ଜଲଦି ଆସିବୁ ।

ମାନସୀ—ହଁ ବାପା··· (ପ୍ରସ୍ଥାନ)

ରାମ—ମୁଁ ବି' ଆସୁଛି ବାପା ?

କୁବେର—ତୁ ସେ ସିନେମା ଟିକେଟ ବ୍ଲାକ ଛାଡ଼ି– ଅନ୍ୟ କିଛି କାମ ଧନ୍ଦା କର····

ରାମ—ଅନ୍ୟ କାମ ଦେଖୁଛି ବାପା···

କୁବେର—ମାନୀ ସେଠ ଘରେ ବାସନମାଜି, ତୁମକୁ ଆଉ କେତେ ଦିନ ପୋଷିବ ? ସେ ତା' ଘର ସଂସାର କରିବ କି, ନାହିଁ ?

ରାମ—କାମତ ମିଳୁନି- ମୁଁ ଆଉ କଣ କରିବି··· (ପ୍ରସ୍ଥାନ)

କୁବେର—ସମସ୍ତଙ୍କୁ କାମ ମିଳୁଛି–ତୁମ ଦୁହିଁଙ୍କୁ ମିଳୁନି····

ଶ୍ୟାମ—ମୁଁ ମଧ୍ୟ ଆସୁଛି ବାପା ?

କୁବେର—ତୁ ମଧ୍ୟ ଅନ୍ୟ କିଛି କାମଦାମ କର ଶ୍ୟାମ- ଲଟେରୀ ଟିକେଟ ବିକି, କେତେ ପଇସା ପାଇବୁ ଯେ– ତୋ' ପେଟ ପୋଷିବୁ ?

ଶ୍ୟାମ—କାମ ଖୋଜୁଛି ବାପା ! ମିଳିଗଲେ– ଲଟେରୀ ବିକା' ଛାଡ଼ିଦେବି···

କୁବେର—ହଉ, ଯା···

(ଶ୍ୟାମ ଗ୍ଲିଯାଇଛି । କୁବେର ତା' ବାଟକୁ ଗ୍ହିଁ କେତେ କଣ ଭବି ହତାଶରେ ନିଜ ଆସ୍ଥାନକୁ ଆସି ବସିଛି । କିଛି କାମନଥିବାରୁ ସ୍ଲେଟ ଖଡ଼ି ଧରି ପାଠ ଲେଖିଛି । କିଛି ସମୟପରେ ଖଇନି ଦଳିଦଳି ଆସିଛି ସିପାହି ହରି ମହାନ୍ତି )

ହରି—ହଇହେ କୁବେର ବୁଢ଼ା– ତୋତେ କେତେ ଥର କହିଲିଣି ଏ ଜାଗା ଛାଡ଼ି ଗ୍ଲି ଯିବାକୁ ?

କୁବେର—ଆସନ୍ତୁ ସିପାହୀ ବାବୁ ! ଆସନ୍ତୁ··· ମୁଁ ସ୍ୱପ୍ନରେ ଦେଖିଛି- ଆପଣ ବାପୁଜୀଙ୍କ ସହିତ ସ୍ୱର୍ଗକୁ ଯାଉଛନ୍ତି···

ହରି—(ଖଇନିଖାଇ) ସ୍ୱପ୍ନ କଥା ଛାଡ୍··· ଆଜି ଗାନ୍ଧି ଜୟନ୍ତୀରେ ରାସ୍ତାଘାଟ ସବୁ ସଫା ହେଉଛି ବୋଲି ତୁ ଜାଣିଛୁ କି ନାହିଁ ?

କୁବେର—ଜାଣିଛି ସିପାହି ବାବୁ··· ହେଲେ କୁଆଡେ ଆମେ ଯିବୁ ? ଆମର କୋଉଠି ଘର ନା' ଦ୍ୱାର ଅଛି । ଏଇ ନିଛାଟିଆ ବରଗଛ; ପାଖରେ ଅନାମିକା ନଇ ଆଉ ମୁନିସିପାଲିଟି ବତୀ ଖୁଣ୍ଟଟା ଅଛି ବୋଲି ଆମକୁ ଟିକିଏ ସୁବିଧା ହେଉଛି ।

ହରି—ଆରେ, ତୋର ସୁବିଧା ହେଲେ, ଅନ୍ୟମାନଙ୍କରଯେ ଅସୁବିଧା ହେଉଛି– ଏ କଥା ଭବୁନୁ କାହିଁକି ? ଏ ବରଗଛରେ ଯେତେ ସବୁ ବାଦୁଡ଼ି, ବଗ, ଗେଣ୍ଡାଳିଆ ଥିଲେ- ସେମାନେ ଗଲେ କୁଆଡ଼େ ?

କୁବେର—ଗତବର୍ଷ ବଡ଼ ବାତ୍ୟାରେ କିଏ କୁଆଡେ ଉଡ଼ିଗଲେ ବାବୁ– ଆଉ ଫେରିଲେ ନାହିଁ । ଆମର କୋଉଠି ଆଶ୍ରା ନାହିଁ ବୋଲି, ଖରା ଜାକର, ଝଡ଼ ବର୍ଷା ସହି ଏଇଠି ପଡ଼ି ରହିଛୁ ।

ହରି—ଆରେ ଯେତିକି ରହିଥିଲୁ– ସେତିକି । ଆଜିଠାରୁ ଏଠି କେହି ତୁମେ ରହିପାରିବ ନାହିଁ । ଏଇଟା ହେଉଛି V.I.P ରୋଡ଼ । ଏଇବାଟେ କେତେ ମନ୍ତ୍ରୀ, କେତେ ଗଭର୍ନର, ଫରେନର- ମାନେ ଯା'ଆସ କରୁଛନ୍ତି । ତୁମକୁ ଓ ତୁମ ଝୁମ୍ପୁଡ଼ିକୁ ଦେଖିଲେ

ସେମାନେ କଣ ଇଛିବେ ଜାଣିନୁ ? ଘବିବେ ଏଇଟା ଗୋଟାଏ କାଙ୍ଗାଳ ଦେଶ ।

କୁବେର—ସେମାନେ ଯଦି ଅମ କଥା ଟିକିଏ ଭବୁ ଥା'ନ୍ତେ ଆମେ ଏ ଗସ୍ତାକଡ଼ରେ ପଡ଼ି ଦୁଃଖ ଭୋଗୁଥାନ୍ତୁ କାହିଁକି ?

ହରି—ଆରେ ସେମାନେ ଦେଶର ଉନ୍ନତି କଥା ଚିନ୍ତା କରିବେ-ନାଁ' ତୁମ ପରି ବୁଲ ଭିକାରୀ, କାଙ୍ଗାଳମାନଙ୍କ କଥା ଚିନ୍ତା କରିବେ ।

କୁବେର—ଛାଡ଼ନ୍ତୁ ସିପାହି ବାବୁ ! ସବୁ ଆମର ଭଗ୍ୟ– ଆଜି ଯଦି ଗାନ୍ଧିଜୀ ଥାନ୍ତେ······

ହରି—ଆରେ ଗାନ୍ଧି ଯୁଗ ଆଉ ନାହିଁ । ଏଇଟା ହେଉଛି- ଆଧୁନିକ ଯୁଗ ତା' ମଡ଼ର୍ଣ୍ଣ ଏଜ । ଭଗ୍ୟକୁ ଆଦରି ଆଜି ଏଠୁ ଝୁମ୍ପୁଡ଼ି ଉଠା··· ତୋ' ଝୁମ୍ପୁଡ଼ି ଭି. ଆଇ. ପି. ରୋଡ଼ର ସୌନ୍ଦର୍ଯ୍ୟ ନଷ୍ଟ କରୁଛି ।

କୁବେର—ସରକାର ରସ୍ତାଘାଟର ସୌନ୍ଦର୍ଯ୍ୟ ବଢ଼ାନ୍ତୁ ବାବୁ-ସେଥିରେ ଆମର କିଛି ଆପତ୍ତି ନାହିଁ । ତା ସାଥିରେ ଭୂମିହୀନ ବାସହୀନ, ଗରିବ ଲୋକଙ୍କୁ ଥଇଥାନ କରିବା' କଣ ସରକାରଙ୍କର କର୍ତ୍ତବ୍ୟ ନୁହେଁ ? ଆମେ ବି'ତ ଏ ଦେଶର ନାଗରିକ । ଏ ଦେଶରେ ଜନ୍ମ ହୋଇଛୁ–ଏ ଦେଶର ପାଣି ପବନରେ ବଢ଼ିଛୁ-ନିର୍ବାଚନରେ ଭୋଟ ଦେଉଛୁ । ଆମ ପାଇଁ ସରକାର କି ସୁବିଧା କରିଛନ୍ତି ?

ହରି—ଆରେ ହେ ! ତୁ କଣ ଏହା ଭିତରେ ନେତା ବନିଗଲୁଣି ? ଅଦା ବେପାରୀ ହୋଇ, ଜାହାଜ ମୂଲ କରୁଛୁ- ମାମୁଁ ଘର ଯିବାକୁ ଇଛା ହେଉଛି କିରେ ପୁଅ···

କୁବେର—ମାମୁଁ ଘର ମୋ' ପାଇଁ କିଛି ନୂଆ ନୁହେଁ ସିପାହୀ ବାବୁ–ଆଜି ସିନା ମୋର ଏ ଅବସ୍ଥା-ମୁଁ ଥିଲି ପୂର୍ବଜନ୍ମରେ ମୁକ୍ତି ସଂଗ୍ରାମୀ

ବିପ୍ଳବୀ କୁମାର ନାୟକ ।

ହରି—(ପରିହାସରେ) ହଁ ହଁ ଥିବୁ– ତୋ' ହାତଗୋଡ଼ରୁ ସେମିତି ଜଣାପଡୁଛି······

କୁବେର—ମିଛ ନୁହେଁ ସିପାହି ବାବୁ ! ସତ କଥା । ୧୯୪୨ ମସିହା ଭରତ ଛାଡ ଆନ୍ଦୋଳନରେ ମୁଁ······

ହରି—ବାଜେ୍ୟ କଥା କହନା' । ସନ୍ଧ୍ୟା ସୁଧା ଏଠୁ ଝୁମ୍ପୁଡ଼ି ଉଠାଉବୁ କି' କହ··· (ରାଗିଉଠିଛି) ନଚେତ୍ ମୁଁ ଫୋର୍ସ ମଗାଇବି । ମୁଁ ରାଗିଲେ କଣ କରିପାରେ-ତୁ ଜାଣିନୁ ।

କୁବେର—ଆଉ ଗୋଟିଏ ସପ୍ତାହ ମୋତେ ଟାଇମ ଦିଅନ୍ତୁ ବାବୁ-ମୁଁ ଏଠୁଁ ଗ୍ଲିଯିବି । ନିଅନ୍ତୁ ଆପଣଙ୍କ ପାନ ଖର୍ଚ୍ଚ···(ପକେଟରୁ ଆଠଣୀ କାଢ଼ି ଯାଚିଛି । )

ହରି—(ଦେଖି) ଏ ଆଠଣୀ ??? (ନେଇ) ଶଳା ହାତୀକୁ କଦଳି ?

କୁବେର—ହାତୀ ପୋଷିବାର ତାକତ ଆମର ନାହିଁ ବାବୁ-ଆମେ ନିଜେତ ଖାଇବାକୁ ପାଉନୁ । ସେଥିରେ ପୁଣି···

ହରି—ଆବେ ! ମୋ ବଟୀ ଆଠଣୀ ନୁହେଁ– ଅତି କମରେ (ପାଞ୍ଚ ଟଙ୍କା ନ କହି ଆଙ୍ଗୁଳି ଦେଖାଇଛି । )

କୁବେର—ଆଜି ପାଞ୍ଚଟଙ୍କା ନାହିଁ ବାବୁ ! କାଲିକି ଦେବି···

ହରି—(ଆଠଣୀ ରଖି) ହଉ, ଠିକ ଅଛି । ମୋ ଜୋତା ପାଲିସ କରିଦେ'···

କୁବେର—ହଁ, ବାବୁ ! ଦିଅନ୍ତୁ···

(ହରି ଯୋତା ବଢାଇ ଦେଇଛି । କୁବେର ତାକୁ ପାଲିସ୍ କରୁଛି । ବାହାରୁ ଖିରୀ ଗିନା ଧରି ଆସିଛି ମାନସୀ । ହରି ମହାନ୍ତିକୁ ଦେଖି, କୁବେରକୁ କିଛି ନ କହି, ଝୁମ୍ପୁଡ଼ି ଭିତରକୁ ଗ୍ଲିଯାଇଛି । ହରି ମହାନ୍ତି, ମାନସୀକୁ ଦେଖି ମୁଗ୍ଧ

ହୋଇଯାଇଛି )

ହରି—ଇଏ କିଏ କିରେ କୁବେର ? (କିଭଗୁଟି) ଘରି ଗୁଲୁଗୁଲିଆତ ହେଇଛି....ହିଃ ! କୋଉଠି ଥୋଇବି···

କୁବେର—ମୋ ଝିଅ ବାବୁ ! ତାକୁ ନଇକୂଳରୁ ପାଇ ଆଣିଥିଲି । ତାରି ଚିନ୍ତାରେ ମୁଁ ସନ୍ଥଳି ହେଉଛି । କେମିତି ତାକୁ ହାତକୁ ଦି'ହାତ କରିଦେଲେ···

ହରି—ତୁ କମା ଚିନ୍ତାକରନା'-କହିବୁ ଯଦି, ତା ପାଇଁ ମୁଁ ବନ୍ଦୋବସ୍ତ କରିଦେବି ।

କୁବେର— ମୁଁ କଣ ମନା କରୁଛି ? ସେ କଣ ଆପଣଙ୍କ ଝିଅ ନୁହେଁ ?

ହରି—ଏଁ !!! ଝିଅ ? ଆବେ ମୋର ଏମିତି କେତେ ବୟସ କି ?

କୁବେର—ଆପଣଙ୍କୁ ୪୦ କିମ୍ବା ୪୫ ବର୍ଷ ହେଇଥିବ ବାବୁ··· ।

ହରି—ହଉ, ଛାଡ଼ ସେ କଥା । ଏଠି ଯେଉଁ ଟୋକାଗୁଡ଼ାକ ରହୁଥିଲେ-ଗଲେ କୁଆଡ଼େ ?

କୁବେର—ସେମାନେ ତାଙ୍କ କାମରେ ଯାଇଛନ୍ତି ବାବୁ··· (ପୋତା ପାଲିସ କରି ଦେଉଛି । )

ହରି—(ଯୋତା ପିନ୍ଧୁ ପିନ୍ଧୁ) ବୁଝିଲୁ କୁବେର ଟୋକାଗୁଡ଼ାଙ୍କ ଉପରେ ଟିକିଏ ନଜର ରଖିଥିବୁ । ଆଜିକାଲି କାହାକୁ ବିଶ୍ୱାସ ନାହିଁ ।

କୁବେର—ସେମାନଙ୍କୁ ମଧ୍ୟ ମୁଁ ନଈପଠାରୁ ପାଇଆଣି ମଣିଷ କରିଛି ବାବୁ···ମାନସୀ ମୋ ଝିଅ ହେଲେ, ଘନଶ୍ୟାମ ମୋ ପୁଅ···

ହରି—ହଉ, ଠିକ ଅଛି । ଗଡ଼ବଡ ହେଲେ ମୋତେ କହିବୁ । ମୁଁ ଯାଉଛି...

କୁବେର—ହଁ ବାବୁ ! ଦଣ୍ଡବତ···

ହରି—ଦଣ୍ଡବତ ।

(ହରି ଗ୍ଲିଯାଇଛି । କୁବେର ବସି ପାଠପଢ଼ିଛି ।
ଭିତରୁ ଗିନାରେ ଖିରୀ ଧରି ଆସିଛି ମାନସୀ ।

ମାନସୀ ବାପା ! ସେଠାଣୀ ଖିରୀ ଦେଇଛି । (ଗିନାଥୋଇ) ଖାଅ···

କୁବେର—(ଦେଖି) ଆରେ ଘନଶାମ ପାଇଁ ଟିକିଏ ରଖ···

ମାନସୀ—ହଁ, ରଖିଛି । ସେମାନେ ଆସିଲେ ଖାଇବେ···

କୁବେର— ଖାଇଛି) ବାଃ, ଭରି ବଢ଼ିଆ ହେଇଛି ମା'···ନେଇଯା—
ରଖିଦେ' । ଘନଶାମ ଆସିଲେ, ଏକାଠି ଖାଇବା···

ମାନସୀ—ହଉ···(ଖିରୀ ଗିନା ଧରି ଗ୍ଲିଯାଇଛି ।)

କୁବେର—ପ୍ରଭୁ ଜଗନ୍ନାଥ ! ତୁମେହିଁ ମାନୀଙ୍କ ମୋର ଭରସା!...
(କୁବେର ହାତ ପୋଛିହୋଇ ପୁଣି ପାଠ ପଢ଼ିଛି । କିଛି
ସମୟ ପରେ ଆସିଛି ନେତା ନଟବର । )

ନଟବର—(ଆସି) ହଇରେ କୁବେର ବୁଢ଼ା ! ତୋର ସବୁ ଭଲତ ?

କୁବେର—ହଁ ବାବୁ ! ଆପଣଙ୍କ ଦୟାରୁ ବଞ୍ଚିଛି ।

ନଟବର—ଆରେ ଦୟାତ ରହିଛି-ରହିବ ତୁ ଆଉ ମୁଁ ବଞ୍ଚିଥିବାଯାଏ,
ଆରେ ଦରିଦ୍ର ନାରାୟଣର ସେବକ ନଟବର ଦାସ ବ୍ୟତୀତ,
ଆଉ କୋଉ ନେତା ତୁମମାନଙ୍କୁ ପଗ୍ଲୁଛି କହିଲୁ ?

କୁବେର—ଠିକ କଥା ଆଜ୍ଞା ! (ଗାମୁଛା ବିଛାଇ) ବସନ୍ତୁ ବାବୁ !
ବସନ୍ତୁ···

ନଟବର—(ବସି) ଗରିବର ସେବା ହେଉଛି ନାରାୟଣଙ୍କ ସେବା—ତା'
ନ ହେଲେ ଆମେ ନେତା ହେବୁ କାହିଁକି ?

କୁବେର—ମୁଁ ସ୍ୱପ୍ନ ଦେଖିଛି ନଟବର ବାବୁ ! ଆପଣ ଗାନ୍ଧିଜୀଙ୍କ
ସହିତ ସ୍ୱର୍ଗରେ ବିଚରଣ କରୁଛନ୍ତି ।

ନଟବର—ହଁ, ଦେଖିଥିବୁ-ଦେଖିଥିବୁ । ମୁଁ ମଧ୍ୟ ସେମିତି କେତେ ସ୍ୱପ୍ନ
ଦେଖୁଛି । ଛାଡ଼୍ ସେସବୁ ସ୍ୱପ୍ନ କଥା । କହ- ତୋର

ତୋର ବାଇଗୁଲ କଣ ?

କୁବେର—ଜ୍ୱରରେ ପଡ଼ିଥିଲି ବାବୁ ! ମରିଯାଇଥାନ୍ତି···

ନଟବର—ଅବଶ୍ୟ ମରିଯିବାଟା ଭଲ । ଗଛମୂଳରେ ପଡ଼ି ଏମିତି ହନ୍ତସନ୍ତ ହେବା ଅପେକ୍ଷା, ମରିଯିବାଟା ବରଂ ଭଲ । ମୁଁ ଜାଣେ–ତୁ ମୋତେ ମୋଟେ ଭୁଲ ବୁଝିବୁନି···ମୁଁ ଶୁଣିଛି ପୂର୍ବ ଜନ୍ମରେ ତୁ କୁଆଡ଼େ ଜଣେ ମହାନ ବିପ୍ଳବୀ ଥିଲୁ ? ଇଂରେଜ ବିରୁଦ୍ଧରେ ଲଢ଼ି, ଫାଶୀ ପାଇଥିଲୁ ?

କୁବେର—ସତ କଥା ବାବୁ ! ସବୁ ମୋର ଗୋଟି ଗୋଟି ମନେପଡ଼ୁଛି । କିନ୍ତୁ କିଦୋଷ କରିଥିଲି କେଜାଣି-ଏ ଜନ୍ମରେ ଗରିବ ମୋଚିଘରେ ଜନ୍ମହୋଇ ଏଇ ଗଛମୂଳରେ ପଡ଼ି ଦୁଃଖ ଭୋଗୁଛି ।

ନଟବର—ସେଥିପାଇଁ ତ କହୁଛି—ମରିଯିବାଟା ବରଂ ଭଲ ।

କୁବେର—ମରିପାରୁଛି କୋଉଠି ନଟବର ବାବୁ ! ସେଇ ଝିଅଟା ତ ମୋର ସବୁ ବାଟ ରୋକି ଦେଉଛି । ତାକୁ କେମିତି ହାତକୁ ଦି'ହାତ କରିଦେଲେ, ମୁଁ ଶାନ୍ତିରେ ନିଶ୍ୱାସ ମାରନ୍ତି···

ନଟବର—କାହିଁ ଏ କଥାତ, ତୁ ମୋତେ ଜମା କହିନୁ ? ଆରେ ବର୍ତ୍ତମାନ ଆମ ପାର୍ଟି ଶାସନରେ ଅଛି । ଯାହା ଗୁହିଁବି– ତାହା ହେବ । ସାମାନ୍ୟ ଗୋଟାଏ ଝିଅକୁ ମୁଁ ଡ଼ିସ୍‌ପୋଜ କରିପାରିବିନିତ – ନେତା ହେବି କାହିଁକି ?

କୁବେର—ଆପଣଙ୍କ ଦୟା ନଟବର ବାବୁ !

ନଟବର—ଆରେ ଦୟା କଣ ? ଏଇଟା ମୋର କର୍ତ୍ତବ୍ୟ । ଏମିତି କେତେ ଅନାଥ ଝିଅଙ୍କୁ ଡ଼ିସ୍‌ପୋଜ କରି ସାରିଲିଣି···ଆରେ ଆଜି ଗୁହିଁଲେ–କାଲି ବାହାଘର···

କୁବେର—ଆପଣଙ୍କର ଧର୍ମ ହେବ ନଟବର ବାବୁ ! ଅନାଥ ଝିଅଟାକୁ କେମିତି ହେଲେ କୂଳରେ ଲଗାଇ ଦିଅନ୍ତୁ···

ନଟବର—ମୁଁ ଜାଣେ, ତୁ ମୋତେ ଭୁଲ ବୁଝିବୁ ନି' । ବିଶ୍ୱାସକର । ତୋ ଝିଅକୁ ମୁଁ କୁଳରେ ଲଗାଇଦେଇ ଏ ରକ୍ଷଣଶୀଳ ସମାଜର ଚକ୍ଷୁ ଖୋଲିଦେବି । ତୁମ ପରି ଅନେକ ଦୁଃଖୀ, ରଙ୍କୀଙ୍କର ଦୁଃଖ ଦେଖି–ମୋ' ଆଖି ଲୁହରେ ଭରିଯାଉଛିରେ କୁବେର-ତୁ ବୁଝି ପାରିବୁନି ମୋ ମନର କଥା···(କାନ୍ଦିଛି ।)

କୁବେର—ମୁଁ ତ ମୂର୍ଖ ହରିଜନ ବାବୁ ! ଆପଣଙ୍କ ପରି ମହାନ ନେତାଙ୍କ କଥା–ମୁଁ ବା' କଣ ବୁଝିବି ?

ନଟବର—ଆରେ ହରିଜନ ସବର୍ଣ୍ଣ,-ଅସବର୍ଣ୍ଣ-ସମସ୍ତେ ମୋ' ଦୃଷ୍ଟିରେ ସମାନ । ବାପୁଜୀ କହୁଥିଲେ–ହରିଜନ ଆଦିବାସୀମାନଙ୍କୁ ସ୍ନେହ ଶ୍ରଦ୍ଧା କର-ତାଙ୍କର ଉନ୍ନତି ପାଇଁ ନିଜକୁ ଉତ୍ସର୍ଗ କର-ତାଙ୍କ ପରିବାରକୁ ନିଜର ପରିବାର ବୋଲି ଭାବ । ତୁ କହ–ମୁଁ ବାପୁଜୀଙ୍କ ଉପଦେଶ ମାନି, ତୁମର ସେବା କରୁଛି କି ନାହିଁ ?

କୁବେର—କରୁଛନ୍ତି ନଟବର ବାବୁ ! ଆପଣଙ୍କ ପରି ଗାନ୍ଧିବାଦୀ ନେତା ଏ ଦୁନିଆଁରେ ଆଉ କେହି ନାହାନ୍ତି ।

ନଟବର—ତୋ' ଝିଅ ବାହାଘରତ ହେବ । ତା' ପୂର୍ବରୁ ମୁଁ ଆଗ ମହାମନ୍ତ୍ରୀଙ୍କୁ କହି, ଏଇଠି ଗୋଟେ ପାଣିକଳ ବସାଇଦେବି । ତୋ' ଝିଅକୁ ଆଉ ନଇକୁ ଯିବାକୁ ପଡ଼ିବନି । ଆଉ ଶକ୍ତି ମନ୍ତ୍ରୀଙ୍କୁ କହି, ତୋ, ଝୁମ୍ପୁଡ଼ିରେ ବିଜୁଳିବତୀ ଲଗାଇଦେବି । ତୁ ଆଉ ଅନ୍ଧାର କଣ ଜାଣିପାରିବୁନି ।

କୁବେର—କିନ୍ତୁ ବାବୁ ! ଝୁମ୍ପୁଡ଼ି ରହିଲେ ସିନା' ଆପଣ ପାଣିକଳ ଆଉ ବିଜୁଳୀବତୀ ଲଗେଇବେ ? ନିଇତି ସିପେଇ ହରିମହାନ୍ତିତ ଏଠୁ ଝୁମ୍ପୁଡ଼ି ଉଠାଇବାକୁ 'ତାଗିଦା' କରୁଛି ।

ନଟବର—ତା' କଥା ମୋତେ ଶୁଣିବୁନି । ମୁଁ କହୁଛି-ତୁମେ ସବୁ ଏଇଠି ରହିବ । ଶଳା ହରି ମହାନ୍ତି ବେଶି ଛଇ ଦେଖାଇବତ

ଶଙ୍କାକୁ ଗଣ୍ଡୁକି ବନ୍ଧାଇ, ରାତାରାତ୍ କୋରାପୁଟ ଜଙ୍ଗଲକୁ ପଠାଇଦେବି । ଶଙ୍କା ଜାଣିବ-ନଟବର ଦାସର କେତେ କଗମତି···ବର୍ତ୍ତମାନ ସବୁ ମନ୍ତ୍ରୀ, ସବୁ ଏମ. ଏଲ. ଏ. ସବୁ ଅଫିସର ମୋ ହାତରେ ।

କୁବେର—ମୋ' ପାଇଁ ଗୋଟେ କାମ କରିଦେଇ ପାରିବେ ନଟବର ବାବୁ—

ନଟବର—ଆରେ ଗୋଟେ କଣ ? ତୁମ ପାଇଁ ମୁଁ ଜୀବନ ଦେବାକୁ ପ୍ରସ୍ତୁତ ଅଛି । କହ, କଣ ତୋର କାମ, କହ···

କୁବେର—ମହାମନ୍ତ୍ରୀଙ୍କୁ କହି, ମୋ ବାର୍ଦ୍ଧକ୍ୟ ଭତ୍ତା···

ନଟବର—ଠିକ୍ ମନେ ପକାଇ ଦେଇଛୁ । ମୁଁ ସେଇଥି ପାଇଁ ଆସିଥିଲି । ଅଥଚ, ତୋ ଝିଅ କଥା ପଡ଼ିବାରୁ. ସବୁ ଭୁଲିଗଲି । ବ୍ୟସ୍ତ ହୋ'ନା—କାଲି ମହାମନ୍ତ୍ରୀଙ୍କୁ କହି ତୋର ବାର୍ଦ୍ଧକ୍ୟ ଭତ୍ତା ମଞ୍ଜୁର କରିଦେବି । (ଯିବାକୁ ଉଦ୍ୟତ) ହଁ, ତୋ ଝିଅ ବାହାଘର ପାଇଁ, ତୁ ମୋଟେ ଚିନ୍ତା କରିବୁନି— ମୁଁ ଅଛି···

କୁବେର—ଆପଣଙ୍କୁ ମୋର ବହୁତ କଥା କହିବାର ଅଛି ବାବୁ ?

ନଟବର—କହିବୁ, କହିବୁ-ବ୍ୟସ୍ତ ହୋନା ବେଳ ଆସୁଛି । ତୁ କହିବୁ—ମୁଁ ଶୁଣିବି । ବର୍ତ୍ତମାନ ମୋର ସମୟ ନାହିଁ । ତେଣେ ଗାନ୍ଧିଜୀଙ୍କ ଜୟନ୍ତୀ ସଭରେ ଭାଷଣ ଦେବାର ଅଛି । ମୁଁ ଯାଉଛି—ସନ୍ଧ୍ୟାକୁ ଆସିବି ··· (ଯାଉଁଯାଉଁ ଫେରି) ହଁ, କୁବେର ! ଏଠିକି ଗୋଟେ କଲେଜ ଟୋକା କିଏ ପ୍ରତିଦିନ ଆସୁଛି ?

କୁବେର—ମଧୁମିଶ୍ର, ବାବୁ ! ଆମ ରସ୍ତାକଡର ମଣିଷଙ୍କ ଉପରେ ବହି ଲେଖୁଛନ୍ତି ।

ନଟବର—ପିଲଟା ମୋଟେ ଭଲ ନୁହଁ । ଘରେ ତୋର ବଢ଼ିଲା ଝିଅ । ମୁଁ ଜାଣେ, ତୁ ମୋଟେ ମୋଟେ ଭୁଲ ବୁଝିବୁନି—

ବହି ଲେଖିବା ବାହାନାରେ ସେ ପିଲଟା ଆସୁଛି ତୋ' ଝିଅକୁ ଉଠେଇ ନେବା ପାଇଁ ।

କୁବେର—ବୁଝିଲି ନଟବର ବାବୁ ! ଆପଣ ଯାନ୍ତୁ···(ପ୍ରଣାମ କରିଛି । )

ନଟବର—ମଧୁମିଶ୍ର ଉପରେ ନଜର ରଖିଥିବୁ । ମୁଁ ଆସୁଛି···(ପ୍ରସ୍ଥାନ)

କୁବେର—ପ୍ରଭୁ ! ତୁମେହିଁ ଆମର ଭରସା······(ଧ୍ୟାନ କରିଛି । )

(ବାହାରୁ ଡାକିଡ଼ାକି ଆସିଛି ମଧୁ ମିଶ୍ର । କାନ୍ଧରେ ତାର ଝୁଲମୁଣୀ । )

ମଧୁ—ମଉସା ! ମଉସା···(କୁବେରଙ୍କୁ ଧ୍ୟାନରତ ଦେଖିଛି ! )

କୁବେର – (ଧ୍ୟାନ ଭଙ୍ଗ) ଆରେ ମଧୁବାବୁ ! ଆସବାବା ! ଆସ··· ( ଗାମୁଛା ବିଛାଇ ) ବସ ବାବା ! ବସ···ତୁମକୁ ମୋର ଅନେକ କଥା କହିବାର ଅଛି ।

ମଧୁ—ରିସର୍ଚ୍ଚ କାମ ଗ୍ଭଲିଛି ମଉସା ! ଆସିବାକୁ ସମୟ ପାଉନି ।

କୁବେର—ଯାହା ହେଉ ବାବା ! ତୁମେ ଠିକ୍ ସମୟରେ ପହଞ୍ଚୁ ଯାଇଛ । ନହେଲେ, ମୁଁ ଭୁଲିଯାଇଥାନ୍ତି···

ମଧୁ—କଣ ମଉସା !

କୁବେର—ମୁଁ ସ୍ୱପ୍ନ ଦେଖିଛି ବାବା ! ଗରିବଙ୍କ ଦୁଃଖ ମୋଚନ ପାଇଁ, ବାପୁଜୀ ଅମର ସ୍ୱର୍ଗରୁ ମର୍ତ୍ତ୍ୟକୁ ଆସିଥିଲେ । ଅଧାବାଟରୁ, ନେତା ନଟବର ଦାସ ଆଉ ସିପେଇ ହରି ମହାନ୍ତି––ତାଙ୍କୁ ଗୁଡ଼ାଏ ମିଛ କଥା କହି, ପୁଣି ସ୍ୱର୍ଗକୁ ଫେରେଇଦେଲେ ।

ମଧୁ—ଏ ଯୁଗର ଦୁର୍ନୀତି ଗ୍ରସ୍ତ ମଣିଷ, ବାପୁଜୀଙ୍କ ନୀତି ଆଦର୍ଶକୁ ଭୁଲିଯାଉଛି ମଉସା ! ! ତଥାପି, ତୁମେ କୁହ-ମୁଁ ଲେଖିବି ।

(ଝୁଲମୁଣୀରୁ ଡ଼ାଇରୀ ଓ କଲମ ବାହାର କରିଛି । )

କୁବେର—ଟିକିଏ ଗ୍ଭ' ଖାଇନିଅ ବାବୁ-ତା' ପରେ କହିବି-ତୁମେ ଲେଖିବ···

ମଧୁ—ହଁ, ମଉସା !

କୁବେର—(ଡ଼ାକିଛି) ଅରେ ମାନୀ ! ମାନୀ······

ମାନସୀ—(ଭିତରୁ) ଯାଉଛି ବାପା···

କୁବେର—ଦେଖିଲୁ, କିଏ ଆସିଛନ୍ତି···

ମାନସୀ—(ଭିତରୁ ଆସି) କିଏ ବାପା ?

(ମଧୁ ଓ ମାନସୀର ଚାରିଆଖିର ମିଳନ ହୋଇଛି । ମୁଗ୍ଧ ହୋଇ ଦୁହେଁ ଦୁହିଁକୁ ଚାହିଁରହିଛନ୍ତି । ଦୁହିଁଙ୍କର ଏପରି ଭାବଦେଖି, କୁବେର ଆନନ୍ଦରେ ହସି ଉଠିଛି । )

କୁବେର—(ମାନସୀ ପ୍ରତି) ଆରେ ଠିଆ ହେଉଛୁ କଣ ମାନୀ ? ଯା'-ମଧୁବାବୁଙ୍କ ପାଇଁ ଚା' ଟିକିଏ କର···

ମାନସୀ—(ଅବସ୍ଥାକୁ ଆସି) ଟିକିଏ ଶୁଣିଲ ବାପା !

କୁବେର—(ଉଠିଆସି) କ'ଣ ମା ?

ମାନସୀ—(କୁବେର କାନପାଖରେ) ଚା' କି ଚିନି କିଛି ନାହିଁ ।

କୁବେର—ହଉ, ମୁଁ ଆଣୁଛି । (ମଧୁପ୍ରତି) ଟିକିଏ ବସ ବାବା ! ମୁଁ ଏଇ ଗଲି- ଆଉ ଆସିଲି··· (ଯିବାକୁ ଉଦ୍ୟତ)

ମଧୁ—ନାହିଁ ମଉସା ! ଚା' ନହେଲେ, ମୋର ଚଳିବ···

କୁବେର—ନାହିଁ ବାବା ! ମୁଁ ଜାଣେ- ତୁମର ଚା ଦରକାର···

(କୁବେର ଚାଲିଯାଇଛି । ମଧୁ ଉଠିଯାଇ ତାର ବାଟକୁ ଚାହିଁଛି)

ମଧୁ—ଏମିତି ଷ୍ଟ୍ରଙ୍ଗ୍ ମାଇଣ୍ଡେଡ଼ ପରସନ- ମୁଁ କେଉଁଠି ଦେଖିନି···

ମାନସୀ—ହୁଃ, ଭଦ୍ର ଲୋକଙ୍କୁ ବସେଇ ଦେଇ, ଚାଲିଲେ ବାବୁ ଚା' ଚିନି ଆଣିବାକୁ··· ( ଭିତରକୁ ଯାଉଥିଲା)

ମଧୁ—(ମାନସୀ ପ୍ରତି) ଶୁଣ···

ମାନସୀ—[ଅଟକିଛି]

ମଧୁ—ନିଅ, ତୁମପାଇଁ ଏଇ ବହିଟି କିଣି ଆଣିଛି ।

(ଝୁଲାମୁଣୀରୁ ବହି ବାହାର କରି ଢାଡ଼ିଛି ।)

ମାନସୀ—ବହି ?

ମଧୁ—ହଁ, ଜାତିର ପିତା ଗାନ୍ଧିଜୀ- ବହିଟି ପଢ଼ିଲେ ବାପୁଜୀଙ୍କ ବିଷୟରେ ସବୁକିଛି ଜାଣି ପାରିବ ।

ମାନସୀ—ହଉବାବୁ ! (ବହିଟି ନେଇ ଗ୍ଲଲିଯାଉଥିଲା)

ମଧୁ—ଶୁଣ

ମାନସୀ—ବାବୁ ! (ଅଟକିଛି)

ମଧୁ—ବର୍ଣ୍ଣବୋଧ ସାରିଲ କି ନାହିଁ ?

ମାନସୀ—ହଁ, ବାବୁ !

ମଧୁ—ପ୍ରଭାତ ପଦ୍ୟରୁ ପଦେ ଗାଇଲ- ମୁଁ ଶୁଣେ···

ମାନସୀ—(ମନେପକାଇ) ପାହିଲା ଅନ୍ଧାର ରଜନୀ ଉଠଉଠ ବାଳକେ··· (ଅଟକି ମନେ ପକାଉଛି) ନବୀନ ପ୍ରଭାତ ସମୟ-ସମୟ···

ମଧୁ—(ପାଖେଇ ଯାଇ) କଣ ? ମନେ ପଡୁନି ?

ମାନସୀ—ମନେ ପଡୁନି ବାବୁ··· (ଗ୍ଲଲିଯାଉଥିଲା)

ମଧୁ—ମାନୀ ! ( ତାର ଡାହାଣହାତ ଧରି ନେଇଛି । ) (ଛାନିଆରେ ମାନସୀ ହାତରୁ ବହିଟି ଖସି ପଡ଼ିଛି । ଦେହ ତାର ଥରି ଉଠିଛି ।)

ମାନସୀ—ମଧୁବାବୁ !!! ଆ-ଆପଣ ???

ମଧୁ—ହଁ ମାନୀ ! ପ୍ରଥମ ଦେଖାରୁ, ମୁଁ ତୁମକୁ ଭଲ ପାଇଛି ମାନୀ-ଭଲ ପାଉଛି । ମୁଁ ତୁମକୁ ବିବାହ କରିବି ।

ମାନସୀ—ବାବୁ !!! ଆପଣ ଏ ଭୁଲ କରନ୍ତୁନି ବାବୁ... ମୋ ଭଳି ଗୋଟେ ଅଶିକ୍ଷିତା, ରାସ୍ତା କଡ଼ର ଜାରଜ ଝିଅକୁ ବିବାହ କରି, ଆପଣ କି ଲାଭ ପାଇବେ ବାବୁ ? (ଦୁରେଇଯାଇ) ଆପଣ ଜଣେ ଉଚ୍ଚ ଶିକ୍ଷିତ, କୁଳ ଶ୍ରେଷ୍ଠ ବ୍ରାହ୍ମଣ ଯୁବକ– ଆପଣଙ୍କ ପାଇଁ ମୁଁ ଯୋଗ୍ୟା ନୁହେଁ ବାବୁ ! ଯୋଗ୍ୟା ନୁହେଁ···

ମଧୁ—ସେମିତି କୁହନା ମାନୀ ! ତୁମେ ମୋ' ଗବେଷଣାର ମୁଖ୍ୟ ନାୟିକା– ମୋ ଜୀବନର ଲକ୍ଷ୍ୟ- ମୋ ଆଶାର ପ୍ରଦୀପ । ତୁମରି ଆଲୋକରେ, ମୁଁ ଏ ଦୁର୍ନୀତୀଗ୍ରସ୍ତ, ଅନ୍ଧ ସମାଜକୁ ବଦଳାଇ ଦେବି ମାନୀ··· ତୁମେ ମୋତେ ନିରାଶ କରନା– (ଧରିନେଇ) ମୋତେ କବାବଦିଅ ମାନୀ– ମୋତେ କଥା ଦିଅ···

ମାନସୀ—ମଧୁବାବୁ··· (ମଧୁ ଛାତିରେ ଲୋଟି ପଡ଼ିଛି)

ମଧୁ—ଦୁନିଆଁର କୌଣସି ଶକ୍ତି, ଅମର ଏ ପବିତ୍ର ବନ୍ଧନକୁ ଛିନ୍ନ କରି ପାରିବନି ମାନୀ– ବଞ୍ଚିବାତ ଆମେ, ମଣିଷ ପରି ବଞ୍ଚିବା– ମରିବାତ ଆମେ ଏକା ସାଥିରେ ମରିବା···

ମାନସୀ—କିନ୍ତୁବାବୁ ! ଆପଣଙ୍କ ବାପାବୋଉ ଯଦି ଏ ପ୍ରସ୍ତାବରେ ରାଜି ନହୁଅନ୍ତି···

ମଧୁ—ବାପାବୋଉ ମୋର ଏ ଦୁନିଆଁରେ ନାହାନ୍ତି ମାନୀ– ଟ୍ରେନ ଦୁର୍ଘଟଣାରେ ଦୁହେଁ ପ୍ରାଣ ହରାଇଛନ୍ତି । ମୋ' ପାଇଁ ଛାଡ଼ି ଯାଇଛନ୍ତି ଅଜସ୍ର ଧନ ସମ୍ପତ୍ତି–କୋଠାବାଡ଼ି, ଶିଳ୍ପ କାରଖାନା ଆଉ ଦଶକୋଟି ଟଙ୍କାର ବ୍ୟାଙ୍କ ବାଲାନ୍ସ···

ମାନସୀ—ବାବୁ ! ! !

ମଧୁ—ମୁ ହେଉଛି– କୋଟିପତି ଗଦାଧର ମିଶ୍ରଙ୍କର ଏକମାତ୍ର ସନ୍ତାନ । ସମସ୍ତ ପୈତୃକ ସମ୍ପତ୍ତିକୁ ମୁଁ ଦୁଃଖି ଅରକ୍ଷିତଙ୍କ ସେବାରେ ଖଟାଇବା ପାଇଁ ପ୍ରତିଜ୍ଞା କରିଛି । ମୋର ଏ ବଳିଷ୍ଠ ପଦକ୍ଷେପର ସଫଳ ରୂପାୟନ ପାଇଁ ଜୀବନ ସାଥୀଟିଏ ଖୋଜିଖୋଜି- ମୁଁ ଆଜି ତୁମକୁ ପାଇଛି ମାନୀ– ତୁମକୁ ପାଇଛି···

ମାନସୀ—ମଧୁବାବୁ ! ! !

ମଧୁ—ମୋତେ ବିଶ୍ୱାସକର ମାନୀ ! ବିଶ୍ୱାସ କର- ମନରୁ ସମସ୍ତ ଆଶଙ୍କା, ଦ୍ୱନ୍ଦ, ସନ୍ଦେହ ଦୂର କରିଦିଅ– ମୁ ପ୍ରତାରକ,

ଶଠ, ସଇତାନ ନୁହେଁ ମାନୀ ! ମୁଁ ତୁମର ଜନ୍ମଜନ୍ମାନ୍ତରେ ସାଥୀ ମଧୁମିଶ୍ର...

ମାନସୀ—ମୋ ଧୃଷ୍ଟତା ପାଇଁ ମୋତେ କ୍ଷମାକରନ୍ତୁ ବାବୁ !

ମଧୁ—ଗବେଷଣା ମୋର ସରିଯାଉ ମାନୀ— ମୋ ମନର କଥା, ମୁଁ ତୁମ ବାପା ଭାଇଙ୍କୁ କହିବି । ମୋ ପ୍ରସ୍ତାବ ଶୁଣି, ସେମାନେ ହୁଏତ ଆନନ୍ଦରେ ନାଚି ଉଠିବେ । ଆଉ ତୁମକୁ ମୋ' ହାତରେ....

ମାନସୀ—ଆପଣ ବସନ୍ତୁ ବାବୁ ! ବାପା ଏଇନେ ଆସି ପହଞ୍ଚିବେ । ମୁଁ ପାଣି ଗରମ କରେ... (ଯିବାକୁ ଉଦ୍ୟତ)

ମଧୁ—ନା, ମାନୀ ! ସ' ମୋର ଦରକାର ନାହିଁ । ଟାଇମ୍ ହୋଇ ଗଲାଣି । ମୁଁ ୟୁନିଭରସିଟିକୁ ଯାଉଛି ।

ମାନସୀ—ନାହିଁ ବାବୁ ! ବାପାମୋତେ ଗାଳିଦେବେ ।

ମଧୁ— ବାପାଙ୍କୁ କହିଦେବ- ମୁଁ ସନ୍ଧ୍ୟାକୁ ଆସିବି... (ପ୍ରସ୍ଥାନ)

(ମଧୁମିଶ୍ର ଗଲି ଯାଇଛି । ତାର ପାଦଧୂଳି ମୁଣ୍ଡରେ ମାରି, ତାର ଚାଲାବାଟକୁ ଗ୍ଚହିଁ, ମାନସୀ କେତେ କ୍ଷଣ ଚିନ୍ତା କରିଛି । ଆନନ୍ଦ ମନରେ ବୁଲିବୁଲି ଗୀତ ଗାଇଛି ।)

ମାନସୀ—(ଗୀତ)

ମୁଁ ଏକ ବନ ଝରଣା, ମନେ ମୋ' କେତେ କାମନା,
କେତେ ଆଶା କେତେ ସ୍ୱପ୍ନ, କେତେ ଅକୁହା ବେଦନା । ପଦ ।

ତୁମେ କି ଜାଣିବ ମୋର, ମନଗହନର କଥା,
ବୁଝିବକି ସତେ ତୁମେ, ଅନ୍ତରତଳର ବ୍ୟଥା ।
ତୁମ ପାଇଁ ଫୁଟିଅଛି, ଫୁଲ ମୁଁ ବର ବରନା । ୧ ।

ମନ ଗ୍ଚହେଁ ମିଶିବାକୁ ସାଗର ସାଥୀରେ ଯାଇ;
ଉଡ଼ିବାକୁ ଆକାଶରେ ଟିକି ତାରାଟିଏ ହୋଇ ।
ସତେ କି ଉଇଁବ ତୁମେ ହୋଇ ମୋ ଭାଗ୍ୟ ଚନ୍ଦ୍ରମା । ୨ ।

[ଗୀତ ଶେଷ ହୋଇଛି । ମାନସୀ, ମଧୁର ବାଟକୁ ଗ୍ଚହିଁ

ଘାଣ୍ଟ ବନିଯାଇଛି । କିଛି ସମୟ ପରେ, ଆସିଛି କୁବେର । )

କୁବେର—(ମାନସୀପ୍ରତି) ଟିକିଏ ଡେ଼ରି ହେଇଗଲା ମା ! ଦୋକାନରେ ଭରି ଭିଡ··· (ଗୁ଼ଚିନି ପୁଡ଼ିଆ ବାଟି) ଗୁ଼ ଚିନି ନେ···

ମାନସୀ— (ଧରି) ମଧୁବାବୁ ଚାଲିଗଲେ ବାପା.... (ବହିଟି ଉଠାଇ ମୁଣ୍ଡରେ ମାରିଛି)

କୁବେର—ଚାଲିଗଲେ ? (ମଧୁ ବାଟକୁ ଚାହିଁଛି)

ମାନସୀ—କହିଛନ୍ତି- ସନ୍ଧ୍ୟାବେଳକୁ ଆସିବେ ।

କୁବେର—ଦେଖ ଚାହେଁ ଏମିତି ଯୁବକ । କେତେ ବଡ଼ ଘରର ପିଲା । M.A ପାଠ ପଢିଛି । ମନରେ ଟିକିଏ ହେଲେ ଗର୍ବ ଅହଂକାର ନାହିଁ । ସ୍ୱାଧୀନ ଦେଶରେ, ରାସ୍ତାକଡ଼ର ମଣିଷଙ୍କ ଉପରେ ରିସର୍ଚ୍ଚ କରୁଛି । ପିଲାଟିକୁ ଦେଖିଲେ- କାହିଁକି ଯେ ମନଟା ମୋର ଅଜଣା ଆନନ୍ଦରେ ନାଚିଉଠେ– ତା କେବଳ ଜଗନ୍ନାଥ ଜାଣନ୍ତି- (ହାତଯୋଡ଼ିଛି)

ମାନସୀ—ହୁଃ, ବାମନ ହୋଇ ଚନ୍ଦ୍ରମାକୁ ଆଶା··· (ପ୍ରସ୍ଥାନ)

କୁବେର—ପାଗଳୀ ଝିଅଟିକାର··· (ନିଜଦୋକାନରେ ବସି ପାଠ ଲେଖିଛି )

(କିଛି ସମୟପରେ ଆସିଛି ଭଣ୍ଡ ବାବାଜୀ ବୈରାଗୀ ଦାସ । ହାତରେ କମଣ୍ଡଳୁ ଓ ତୁଳସୀ ମାଳ । ମୁହଁରେ ଶିବ ଶଙ୍କର ଙ୍କର ନାମ ।)

ବୈରାଗୀ—(ଜପିଜପି ଆସିଛି) ଜୟ ଶିବଶଙ୍କର– ଜୟଶିବ ଶଙ୍କର-ଜୟ ଶିବ ଶଙ୍କର···

କୁବେର—(ଦେଖି) ବୈରାଗୀ ବାବା !!!(ଉଠିଯାଇ ପ୍ରଣାମ କରିଛି) ଅଧମର ପ୍ରଣାମ ଗ୍ରହଣ କରନ୍ତୁ ବାବା···

ବୈରାଗୀ—ଜୟ ଶିବ ଶଙ୍କର··· ଉଠ, ଉଠବାବା ସିଦ୍ଧ ସାଧକ

କାଲ୍ପିକ ମୋଟିର ବଂଶଧର-ବାବା ଲଙ୍କେଶ୍ୱରଙ୍କର ପାଦୁକ ପାଅ... ଘୋର କଳିକାଳର ଦୁଃଖ ଯନ୍ତ୍ରଣାରୁ ମୁକ୍ତି ପାଇ-ଯିବ ବାବା- ମୁକ୍ତି ପାଇଯିବ...

କୁବେର—ପାଦୁକ ଦିଅନ୍ତୁ ବାବା... (ହାତ ପତାଇଛି)

ବୈରାଗୀ—ନିଅ ଭକ୍ତ... ଖାସ୍ ତୁମ ବାପଝିଅ କୁହିଁକୁ ପାଦୁକ ଦେବା-ପାଇଁ ମୋର ଏ ସ୍ଥାନକୁ ଆଗମନ । (ପାଦୁକ ଦେଇ) ତୁମ ଝିଅକୁ ଡ଼ାକ ବାବା... ସେ ମଧ୍ୟ ଆଜି ନବମୀ ତିଥିରେ ବାବା ଲଙ୍କେଶ୍ୱରଙ୍କର ପାଦକ ପାଉ । ସକଳ ରିଷ୍ଟ ତାର ଖଣ୍ଡନ ହେଇ ଯିବ— ବାଢୁଅ ଦୋଷ ତାର କଟିଯିବ ବାବା...

କୁବେର—ଡ଼ାକୁଛି ବାବା... (ଡ଼ାକିଛି) ଆରେ ମାନୀ ! ମାନୀ...

ମାନସୀ—(ଭିତରୁ) ଯାଉଛି ବାପା...

କୁବେର—ଅଁ ମା ! ଶୀଘ୍ର ଆ...

ବୈରାଗୀ—ଜୟ ଶିବ ଶଙ୍କର-ଜୟ ଶିବ ଶଙ୍କର... (ଗଛ ଉପରକୁ ଚାହିଁ) ଏ ଗଛରେ ଗୋଟେ ବ୍ରାହ୍ମଣୀ ଅଛି ବାବା— ତୁମରି ମଙ୍ଗଳ ପାଇଁ ମୁଁ ତାକୁ ଏଠୁଁ ତଡ଼ିବାର ବ୍ୟବସ୍ଥା କରୁଛି ।

ମାନସୀ—(ଝୁମୁଡ଼ି ଭିତରୁ ଆସି) କ'ଣ ବାପା ?

କୁବେର—ଆରେ ବୈରାଗୀ ବାବା ଆସିଛନ୍ତି । ପ୍ରଣାମ କର...

ମାନସୀ—(ବୈରାଗୀର ପାଖକୁ ଯାଇ ପ୍ରଣାମ କରିଛି)

ବୈରାଗୀ—ଜୟ ଶିବ ଶଙ୍କର- ଜୟ ଶିବ ଶଙ୍କର... ଭକ୍ତର ମନବାଞ୍ଛା ପୂର୍ଣ୍ଣକର ବାବା ଲଙ୍କେଶ୍ୱର । ନିଅ ମାତା ! ପାଦୁକ ନିଅ...

ମାନସୀ—(ପାଦୁକ ପାଇଁ ହାତ ବଢ଼ାଇଛି ।)

ବୈରାଗୀ—ଆହାଃ ହାଃ ହାଃ... କି ଅଡ଼ୁତନସ ଚେହେରା !!! ବାସ୍ତବିକ ବାବା ଲଙ୍କେଶ୍ୱରଙ୍କର ସେବା ପୂଜାପାଇଁ ଏମିତି ଜଣେ ମାତାଙ୍କୀ ନିହାତି ଦରକାର... (ଅନ୍ୟମନସ୍କ ହୋଇ ପାଦୁକ

ମାନସୀର ହାତରେ ନ ଢ଼ାଳି, ତଳେ ଢାଳିଛି)

କୁବେର—(ଦେଖି) ପାଦୁକ ତଳେ ପଡୁଛି ବାବା···

ବୈରାଗୀ—ଏଁ... (ମାନସୀର ହାତରେ ଢାଳିଛି) ତୁମେ ଠିକ୍ ଧରିଛ ଭକ୍ତ କୁବେର- ଘୋର କଳିକାଳରେ ଏମିତି ସବୁ ଅନେକ ଅନୀତି ଘଟୁଛି- ମୁନି ଋଷିମାନଙ୍କର ମତି ଭ୍ରମ ହେଇ ଯାଉଛି...

ମାନସୀ—(ପାଦୁକ ପାଇ ଗ୍ଳଲିଯାଉଛି)

ବୈରାଗୀ—(ମାନସୀର ବାଟକୁ ଗ୍ହିଁ) ଜୟ ଶିବ ଶଙ୍କର- ଜୟ ଶିବ ଶଙ୍କର... (କୁବେର ପ୍ରତି) ବୁଝିଲୁ ଭକ୍ତ କୁବେର- ମୁଁ ଜାଣି ପାରୁଛି, ସ୍ଵର୍ଗର କୋଉ ଅପସରୀ କୌଣସି କାରଣରୁ, ତୋ ଝୁମ୍ପୁଡ଼ିରେ ଆଶ୍ରୟ ନେଇଛି । ତୁ ତାକୁ ବାବା ଲିଙ୍ଗେଶ୍ଵରଙ୍କୁ ଦାନ କରିଦେ' ବାବା ! ଜନ୍ମ ତାର ସାର୍ଥକ ହୋଇ ଯିବ... ପୂର୍ବ ଜନ୍ମର ଫଳ ମଧ୍ୟ ବାବା ଲିଙ୍ଗେଶ୍ଵର ତୁମକୁ ପ୍ରଦାନ କରିବେ ।

କୁବେର—ତାହା ଯଦି ପ୍ରଭୁଙ୍କର ଇଚ୍ଛା– ମୁଁ ବା' କାହିଁକି ମନା କରିବି ବାବା...

ବୈରାଗୀ—ପ୍ରଭୁଙ୍କ ର ଏକାନ୍ତ ଇଚ୍ଛା ଭକ୍ତ କୁବେର ! ପ୍ରଭୁ ସ୍ଵପ୍ନରେ ମୋତେ ଅନେକଥର କହିଲେଣି । କିନ୍ତୁ ମୁଁ ତୋତେ କହିବାକୁ ଭୁଲି ଯାଇଥିଲି...

କୁବେର—ହଉ ବାବା ! ଆସନ୍ତା ସଂକ୍ରାନ୍ତି ଦିନ, ମୁଁ ଝିଅକୁନେଇ ମନ୍ଦିରକୁ ଯିବି...

ବୈରାଗୀ—ଥ୍ୟାଙ୍କ୍ ୟୁ' ବାବା ! ଥ୍ୟାଙ୍କ୍ ୟୁ'··· ମୁଁ ତୁମକୁ ଅପେକ୍ଷା କରିଥିବି । ସେଇଦିନ ତୋ' ଝିଅକୁ ପ୍ରଭୁଙ୍କୁ ଅର୍ପଣ କରିଦେବା...

କୁବେର—ପ୍ରଭୁ ଲିଙ୍ଗେଶ୍ଵରଙ୍କର ଯାହା ଇଚ୍ଛା ତାହା ହିଁ ହେବ··· (ପ୍ରଣାମ କରିଛି)

ବୈରାଗୀ—ଆମେ ଗଲିଲୁ ବାବା··· ଜୟ ଶିବ ଶଙ୍କର– ଜୟ ଶିବ-ଶଙ୍କର··· (ପ୍ରସ୍ଥାନ)

କୁବେର—ସତେ କଣ ମାନସୀ ମୋର ସ୍ୱର୍ଗର ଅପସରୀ ?!? ବାବାଙ୍କ କଥାପଦି ସତ ହୁଏ··· (ଚିନ୍ତିତ)

କିଷନଲଲ—(ପ୍ରବେଶି) ଆରେ କୁବେର ଜୁତା ପାଲିସବାଲା– କ୍ୟା ସୋଚତା ହୈରେ ? ପୁରୁବ ଜମନକା ବାତ୍ ସୋଚତା ହୈ କ୍ୟା ?

କୁବେର— (ଦେଖି) ନମସ୍କାର ଶେଠଜୀ ! ଆସନ୍ତୁ–ଆସନ୍ତୁ··· ଆସି ନିଜ ସ୍ଥାନରେ ବସିଛି)

କିଷନ—କ୍ୟା କୁବେର ! ତେରାସବ୍ ଠିକ ହୈ ତୋ' ?

କୁବେର—ଠିକ୍ ଆଉ କଣ ବାବୁ ? ସିପେଇ ହରି ମହାନ୍ତି ଝୁମ୍ପୁଡ଼ି ଉଠେଇବାକୁ ତାଗଦା କରୁଛି···

କିଷନ—ଅରେ ବୋ'ବୋ ଉସ୍‌କୁ ପାଞ୍ଚଦଶ ଗୁଡ଼ିଯା···

କୁବେର—ପାଞ୍ଚଦଶ ଟଙ୍କା କୁଆଡୁ ଆଣିବି ସେଠଜୀ ? ଗୁଜଲ କିଲକକୁ ତ ପଇସା ହେଉନି...

କିଷନ—ଠିକ୍ ହୈ ! ହାମ୍ ଉସ୍‌କୁ ସମଝାଇଦେବା ବୋ'– ତୁ ମେରା ଜୁତା ପାଲିସ୍ କର, ବୋ'....

କୁବେର—ହଁ, ଶେଠଜୀ···

(କିଷନଲାଲ ଜୋତା ଷ୍ଟାଣ୍ଡରେ ଗୋଡ ରଖିଛି । କୁବେର ପାଲିସ୍ କରିଛି )

କିଷନ—(ଝୁମ୍ପୁଡ଼ି ଆଡ଼କୁ ଦୃଷ୍ଟି ପକାଇ) ଆଚ୍ଛା କୁବେର ! ତେରୀ ଲଡ଼୍କୀକା ସାଦି ହୁଆ କି ନେହିଁ ?

କୁବେର—ରାସ୍ତାକଡର ଅନାଥ ଝିଅକୁ କିଏ ବାହା ହେବ ବାବୁ ? ନେତା ନଟବର ବାବୁଙ୍କୁ କହିଛି– ଆପଣଙ୍କୁ କହୁଛି– ଆପଣମାନେ ଯଦି ଦୟାକରନ୍ତେ···

କିଷନ—ଆରେ ତୁ ଚିନ୍ତା ମତ କର । ନେୟା ନଟବର, ସିପାହୀ ହଭି ମହାତି- ଏ ସବ୍ ପାଲତୁ ଆଦ୍‌ମୀ । ହାମ୍ ଷ୍ଟିଲମଲୀ କୁ କହି, ତେରୀ ଲଡକୀକୁ କହିଁନା କହିଁ ଆଛା ନୌକରି କରାଇ ଦେବ ।

କୁବେର—ଆପଣଙ୍କର ଧର୍ମ ହେବ ଶେଠ୍‌ଜୀ···

କିଷନ—ଆରେ କହିଁ ନେହିଁ ହୋନେସେ, ହାମ୍ ଅପନା ଫ୍ୟାକ୍ଟ୍ରିମେ ରଖାଇ ଦେବ···

କୁବେର—ପ୍ରଭୁ ଆପଣଙ୍କର ମଙ୍ଗଳ କରିବେ ଶେଠ୍‌ଜୀ···

କିଷନ—ଠିକ୍ ହେ । ମନ୍ତ୍ରୀସାହେବ ଅଜ ଶାମକୁ ସର୍କିଟ୍ ହାଉସ ଆୟେଙ୍ଗେ । ମନ୍ତ୍ରୀ ସାହେବକୁ ତେରୀ ଲଡ଼୍‌କି ଥୋଡ଼ା ଇଣ୍ଟରଭିଉ ଦେଙ୍ଗେ । ଉସକେ ବାଦ୍, ହାମ୍‌କୁ ଫ୍ୟାକ୍ଟ୍ରି ଲାଇସେନ୍‌ସ ମିଲ୍ ଯାଏଗା- ଔର ତେରି ଲଡ଼କୀକୁ ନୌକରୀ···

କୁବେର—ଝିଅଟା କେମିତି ସର୍କିଟ ହାଉସ ଯିବ ଶେଠଜୀ ?

କିଷନ—ଅରେ ହାମ୍ ଖୁଦ୍ ଗାଡ଼ିମେ ଲେ' ଯାଉଁଗା...

କୁବେର—ହଉ, ଶେଠଜୀ ! ଆପଣ ସନ୍ଧ୍ୟାକୁ ଆସନ୍ତୁ- ମୁଁ ଝିଅକୁ ପଠେଇ ଦେବି । ନିଅନ୍ତୁ- ଜୋତା ପିନ୍ଧନ୍ତୁ···

କିଷନ—ଠିକ୍ ହେ··· (ଜୋତା ପିନ୍ଧିଛି )

(ଦୂରରୁ ଭାମର ଗୀତ ଶୁଣାଯାଉଛି । ଚମକି ଉଠିଛି, କିଷନ ଲାଲ ।)

ଭାମ—(ଅନ୍ତରାଳରୁ) ମେରା ଅଙ୍ଗନେ ମେଁ ତୁମାରା କ୍ୟା କାମହେ- ମେରା ଅଙ୍ଗନେ ମେଁ···

କିଷନ—ଆରେ କୁବେର ! ୟେ ଶାଲା ସିନେମାବାବାଲ କୌନ ହେ

କୁବେର—ମୋ ପୁଅ ଭାମ, ଶେଠ୍‌ଜୀ···

କିଷନ—ଠିକ୍ ହେ । (ହଡ଼ବଡ଼ରେ) ଲେଲୋ ଏ ଦଶ ରୁପୟା···

କୁବେର—(ଧରି) ମୋ ପାଖରେ ଖୁଚୁରା ନାହିଁ ଶେଠଜୀ– ଟଙ୍କାଟେ ଅଛିତ– ଦିଅନ୍ତୁ···

କିଷନ—ଆରେ ରଖ୍‌ଲେ– ରଖ୍‌ଲେ··· ଆରେ ଏସାତୋ’ ପାନ ସିଗାରେଟମେ’ ମେରା ରୋଜ୍ କିଶ ପଚିଶ ଖର୍ଚ୍ଚ ହୋ’ ଜାତା ହେ । ତୁ ଲେନେ ସେ ମେରା କୁଛ ଲୋକସାନ ନେହିଁ । ମେଁ ଅତାହୁଁ ଶାମ୍‌କୁ···

କୁବେର—ନମସ୍କାର ଶେଠଜୀ···

କିଷନ—ନମସ୍କାର···

(କିଷନଲାଲ ଯିବାସମୟରେ, ରାମ ଗୀତ ଗାଇ ଗାଇ ପ୍ରବେଶକ୍ଷି )

ରାମ—ମେରା ଅଙ୍ଗନେମେଁ ତୁମାରା କ୍ୟା କାମ ହେଁ...

(କିଷାନକୁ ଦେଖି ଗୀତ ବନ୍ଦକରି ରାଗରେ ଜଳି ଉଠିଛି । କିଷନ ଉପରେ ଝଗିଛି ।)

କିଷନ—ସୀତାରାମ ! ସୀତାରାମ–ସୀତାରାମ···

ରାମ—ହାରାମଜାଦା !!! ଯାଉଛୁ କି ନାହିଁ.... (ମାଡ଼ି ଆସିଛି)

କିଷନ—ସୀତାରାମ ! ସୀତାରାମ–ସୀତାରାମ···
(ଭୟରେ ଦୌଡ଼ି ପଳାଇଛି ।)

ରାମ—(ତା’ ବାଟକୁ ଚାହିଁ) ଶାଲା ଚୋର··· ସୀତାରାମ ନାମକୁ ବଦନାମ କରୁଛି– ଗରିବଙ୍କ ତଣ୍ଟିଚିପି ଶେଠ ବୋଲାଉଛି··· (କୁବେର ପ୍ରତି) ବାପା ! କଣ ତୁମର ଇଚ୍ଛା ? ନେତା ନଟବର, ବାବାଜୀ ବୈରାଗୀ ଦାସ, ଶେଠ କିଷନ୍ ଲାଲ ଏଠି କି ଆସୁଛନ୍ତି କାହିଁକି ?

କୁବେର—ଆସନ୍ତୁ । ସେମାନେତ ଆମର କିଛି କ୍ଷତି କରୁନାହାନ୍ତି । ବରଂ

ଆମପ୍ରତି ସେମାନଙ୍କର ସହାନୁଭୂତି ଅଛି ।

ରାମ— ତୁମେ ସେମାନଙ୍କୁ ଚିହ୍ନିନ ବାପା- ବିନା ସ୍ୱାର୍ଥରେ ସେମାନେ କାହାକୁ ଆଡ଼ ଆଖିରେ ଗ୍ରହାନ୍ତିନି··· ମୁଁ ଜାଣେ, ସେମାନଙ୍କ ନଜର ଆମ ମାନୀ ଉପରେ ।

କୁବେର—ନାଁ ରାମ ! ତୁ ସେମିତି କହନା- ସେମାନେ ସମସ୍ତେ ଭଦ୍ର ଲୋକ- ଗରିବ ଦୁଃଖିଙ୍କଙ୍କର ମା'ବାପ···

ରାମ—ଠିକ୍ ଅଛି । (ଫେରିକରି) ମୁଁ ଆଉ ଏଠି ରହିବିନି···

କୁବେର—କାହିଁକି ? (ଉଠିଆସି) କ'ଣ ହେଲା ତୋର ?

ରାମ—ତୁମ ମୁହଁରେ ଅମୃତ- ଆଉ ପେଟରେ ବିଷ···

କୁବେର—(ଭାଙ୍ଗିପଡ଼ି) ଆରେ ! ତୁ ଏମିତି କହି ପାରିଲୁ ରାମ ?

ରାମ—ମୁଁ ଜାଣେ, ତୁମେ ମାନସୀକୁ ବେଶ୍ୟା କରିଦେବ- ବେଶ୍ୟା···

କୁବେର—ରାମ··· (ଗର୍ଜିଉଠି ରାମର ଗାଲକୁ ମାରିଛି)

ରାମ—ବାପା··· (ଗାଲ ଆଉଁସି କାନ୍ଦି ଉଠିଛି)

କୁବେର—ଯା', ତୁ ଏଠୁ ଚାଲିଯା··· ଚାଲିଯା··· ( ନିଜ ହାତକୁ ଦେଖି ଅନୁତାପ କରିଛି)

ରାମ—ବାପା··· (ଭାଙ୍ଗି ପଡ଼ି କାନ୍ଦିଛି)

ମାନସୀ—(ଝୁମ୍ପୁଡ଼ି ଭିତରୁ ଆସି) କଣ ହେଲା ବାପା ? (ରାମ ପ୍ରତି) କଣ ହେଲା ଭାଇ ? ବାପା କାନ୍ଦୁଛନ୍ତି- ତୁମେ କାନ୍ଦୁଛ···

ରାମ—ନାଁ କିଛି ହେଇନି (ଏଡ଼ଏଡ଼୍ କରିଛି)

ମାନସୀ— କିଛିହେଇନିତ- ଦୁଇଜଣଯାକ କାନ୍ଦୁଛ କାହିଁକି ?

ରାମ—ତୁ ସେଥିରୁ କଣ ପାଇବୁ.... (ଚାଲିଯିବାକୁ ଉଦ୍ୟତ)

କୁବେର—ମୁଁ ଭୁଲ କରିଛି ମାନୀ ! ମୁଁ ଭୁଲ କରିଛି- ଭୁଲକରିଛି··· (ନିଜଗାଲକୁ ଚାପଡ଼ାମାରି ହୋଇଛି ।)

ମାନସୀ—ବାପା... ଏ କଣ କରୁଛ ବାପା ! ଏ କଣ କରୁଛ...
(ଦୌଡ଼ିଯାଇ କୁବେରର ଡାହାଣହାତ ଧରିଛି)

ରାମ—ବାପା··· (ଦୌଡ଼ିଯାଇ ତାର ବାମ ହାତକୁ ଧରି) ମୋର ଭୁଲ ହୋଇ ଯାଇଛି ବାପା ! ମୋର ଭୁଲ... ହୋଇ ଯାଇଛି...

କୁବେର—ନା଼ ତୁମେ ମୋତେ ଛାଡ଼ିଦିଅ— ଛାଡ଼ିଦିଅ... (ଘୁଞ୍ଚିଆସି ସେମାନଙ୍କୁ ମଝିକରି କାନ୍ଦିଛି)

ଉଭୟ—ବାପା... (ଦୌଡ଼ିଯାଇ କୁବେରକୁ ଧରିଛନ୍ତି) କାନ୍ଦନା ବାପା ! କାନ୍ଦନା···

ଶ୍ୟାମ—(ପ୍ରବେଶି) କଣହେଲା ମାନୀ ? କଣ ହେଲା ରାମ ଭାଇ ? ବାପା କାନ୍ଦୁଛନ୍ତି କାହିଁକି ?

କୁବେର—ନା଼ ମୋର କିଛି ହୋଇନି । (ସାମନାକୁ ଆସି) ତୁମେ ସମସ୍ତେ ଏଠୁ ଚାଲିଯାଅ...

ସମସ୍ତେ—ବାପା... (ମାନସୀ ଭୟରେ ଠିଆହୋଇ ଖାଲି କାନ୍ଦୁଛି । ରାମ ଓ ଶ୍ୟାମ ଦୁହେଁ ଦୌଡ଼ି ଯାଉଛନ୍ତି କୁବେର ପାଖକୁ ।)

କୁବେର—ନା଼, ମୁଁ ଏଠି କାହାକୁ ଦେଖିବାକୁ ଦେବିନି । ମୁଁ ଜାଣେ, ତୁମେ ସମସ୍ତେ ଗୋଟେ ଗୋଟେ ରାକ୍ଷସ, ବିଷବୃକ୍ଷ, ଚରିତ୍ରହୀନ, ଅଭିଶପ୍ତ— ତୁମ ମୁହଁ ଚାହିଁଲେ ପାପ···

ଉଭୟ—(ରାମ ଶ୍ୟାମ) ବାପା... (ଲାଜି ପଡ଼ିଛନ୍ତି)

କୁବେର—ତୁମକୁ ରାସ୍ତାକଡ଼ରୁ ଗୋଟେଇ ଆଣି, ମୁଁ ଭୁଲ କରିଛି- ପାପ କରିଛି- (ଗାଲକୁ ଚାପୁଡ଼ାମାରି) ପାପ କରିଛି....

ଉଭୟ—ବାପା... [ରାମ ଶ୍ୟାମ ଦୁହେଁ କୁବେରର ଦୁଇ ହାତକୁ ଧରିଛନ୍ତି]

କୁବେର—ନା଼, ତୁମେ ମୋର କେହି ନୁହଁ । (ଦୂରେଇଯାଇ) ଏ ଦୁନିଆଁରେ ମୁଁ ଏକୁଟିଆ । ମୋର ଘରଦ୍ୱାର ନାହିଁ—

ପୃଥିବୀରେ ଆତ୍ମୀୟ ସ୍ୱଜନ କେହି ନାହାନ୍ତି । ମୁଁ ନିଃସ୍ୱ ଅସହାୟ, ନିରୁପାୟ··· ଏଇ ନିର୍ଜନ ରାସ୍ତାକଡ଼ର ଗୋଟାଏ ନଷ୍ଟାବରଗଛ । (କାନ୍ଦିଛି)

ରାମ—(ପାଦଧରି) ମୋର ଭୁଲ ହୋଇଯାଇଛି ବାପା–ମୋତେ କ୍ଷମା କରିଦିଅ··· (କାନ୍ଦିଛି)

ଶ୍ୟାମ—(ଅନ୍ୟପାଦଧରି) ଆମକୁ କ୍ଷମା କରିଦିଅ ବାପା··· ତୁମ ବ୍ୟତୀତ ଆମର ଆଉକିଏ ଅଛି··· (କାନ୍ଦିଛି)

(କୁବେର ମନରେ ଭବାନ୍ତର ଜାତ ହୋଇଛି । ସେ ଭୁଲି-ଯାଇଛି ସବୁ ଦୁଃଖ ଯାତନା ।)

କୁବେର—ଉଠ, ଉଠ ବାପାମାନେ ଉଠ··· ( ରାମଶ୍ୟାମକୁ କୋଳେଇ ନେଇ) ତୁମେ ସବୁ ଗଲିଗଲେ, ମୁଁ ବଞ୍ଚିବି କେମିତି ? ଜୀବନରେ ସବୁକିଛି ହରାଇ, ମୁଁ ଯେ' ତୁମକୁ ପାଇଛି । ତୁମେ ମୋର ସବୁ ଅମୂଲ୍ୟ ଧନ । ଆଉ ମୁଁ ଏ ବିରାଟ ରାଜପଥର ସମ୍ରାଟ କୁବେର ମୋଚି··· (ସମ୍ରାଟର ମୁଦ୍ରାରେ ଠିଆ ହୋଇ ଯାଇଛି ।)

ରାମ—ସମ୍ରାଟ କୁବେର ମୋଚି କି···

ଉଭୟ—(ଶ୍ୟାମ ଓ ମାନସୀ) ଜୟ···

(ରାମଶ୍ୟାମ ଦୁହେଁ କୁବେରର ଦୁଇ ପାଖରେ ରହି ମୁହଁରେ ତୁରୀ ବଜାଇଛନ୍ତି । ମାନସୀ ଆସି ସମ୍ରାଟ କୁବେରକୁ ପଙ୍ଖା କରିଛି । କୁବେର ଏ ସବୁ ଦେଖି ଆନନ୍ଦିତ ହୋଇଛି ।)

କୁବେର—(ହସି) ପାଗଳ ପାଗଳୀ କୁଆଡ଼ିକାର··· ଯାଅ, ଖାଇବ ଯାଅ... ( ଆସି ନିଜ ସ୍ଥାନରେ ବସିଛି । )

ମାନସୀ—ଭଇ ! ଭାତ ବାଢ଼ିବି ?

ରାମ—ହଁ ବାଢ଼ିବୁ ଯା'—

ଶ୍ୟାମ—ସମସ୍ତେ ଅଜି ସାଙ୍ଗ ହୋଇ ଖାଇବା···

କୁବେର—ନା ବାପାମାନେ ! ତୁମେ ଖାଇବ ଯାଅ– ମୁଁ ପରେ ଖାଇବି ।

ରାମ—ତୁମେ ନଖାଇଲେ, ଆମେ କେହି ଖାଇବୁନି···

କୁବେର—ମୁଁ ରାତିନିରେ ବାବା–ଦେହଟା ମୋର ଭଲ ଲାଗୁନି । ମୁଁ ଟିକିଏ ଶୋଇ ଯାଉଛି–ତୁମେ ସବୁ ଖାଇବ ଯାଅ...(ଶୋଇଛନ୍ତି)

ରାମ—ବାପା ତ ଶୋଇଲେ । ସେ ନ ଖାଇବା ଯାଏଁ– ଆମେ କେହି ଖାଇବାନି···

ଶ୍ୟାମ—ବାପା ! ଉଠନ୍ତୁ । ଆଜି ସମସ୍ତେ ସାଙ୍ଗରେ ଖାଇବା– ଏବେ ସ୍କୁଲ ପାଠ ପଢିବା···

ରାମ—ହଁ (ମାନସୀ ପ୍ରତି) ମାନୀ ! ଅଣିକୁ ଆମ ସ୍ଲେଟ ଖଡ଼ି···

ମାନସୀ—ଆଣୁଛି ଭାଇ··· (ଝୁମୁଡ଼ିକୁ ଯାଉଛି)

ରାମ—ବସ୍ ଶ୍ୟାମ ! ବସ୍···

ଶ୍ୟାମ—ହଁ ଭାଇ···

(ରାମଶ୍ୟାମ ବସିଛନ୍ତି । ମାନସୀ ଦୁଇଟା ସ୍ଲେଟ ଓ ଖଡ଼ି ଆଣି ଦୁହିଁଙ୍କି ଧରାଇଛି)

ମାନସୀ—ନିଅ, ତୁମର ସ୍ଲେଟ ଖଡ଼ିନିଅ.... (ଦୁହିଁଙ୍କୁ ଦେଉଛି )

ରାମ—(ସ୍ଲେଟ ଖଡ଼ିଧରି) କଣ ଲେଖିବୁ ମାନୀ ?

ଶ୍ୟାମ—ଫଳାପାଠ ଲେଖିବୁ– ପଚାରୁଛୁ କଣ ?

ମାନସୀ—ଫଳାପାଠତ ସରିଛି– ଆଜି ବନାନ ଶିଖିବ ।

ଲେଖ··· କ' ଆକାର କା'– ଖ 'ଆକାର ଖା'···

(ଦୁହେଁ ଲେଖିଛନ୍ତି । ମାନସୀ ତାଙ୍କ ପଛ ପଟକୁ ଯାଇ, ଦୁହିଁଙ୍କ ମଝିରେ ଛିଡ଼ି ବତାଉଛି ।)

ରାମ—(ମାନସୀ ପ୍ରତି) ଦେଖିଲୁ, ମୋର ହୋଇଛି କି' ନାହିଁ ?

ମାନସୀ—(ଦେଖି) ହଁ ତୁମର ହୋଇଛି । (ଶ୍ୟାମ ପ୍ରତି) ତୁମର

ଶ୍ୟାମ ଖର ?

ଶ୍ୟାମ—(ସ୍ଲେଟ ଦେଖାଇ)ଦେଖିଲୁ...

ମାନସୀ—(ଦେଖି) କ’ ଟାକୁ ଟିକିଏ ଭଲ କରି ଲେଖ...

ଶ୍ୟାମ—ଲେଖୁଛି... (ଲେଖିଛି)

ମାନସୀ—ଲେଖ, କ’ ଆକାର କା’...

ଉଭୟ—(ରାମଶ୍ୟାମ) କ’ ଆକାର କା...

ମାନସୀ—ଖ’ ଆକାର ଖା...

ଉଭୟ—ଖ’ ଆକାର ଖା...

ମାନସୀ—ଗ’ ଆକାର ଗା’...

ଉଭୟ—ଗ’ ଆକାର ଗା....

ମାନସୀ—ଘ’ ଆକାର ଘା...

ଉଭୟ—ଘ’ ଆକାର ଘା’...

(ମାନସୀ ଉଠି, ଗୀତ ଗାଇ, ଅଭିନୟକରି ତାଙ୍କୁ ପଢ଼ାଇଛି)

ମାନସୀ— (ଗୀତ) କ’ ଆକାର କା- ଖ ଆକାର ଖା’
ଗ’ ଆକାର ଗା- ଘ’ ଆକାର ଘା’-

ଉଭୟ—(ଦୁହେଁ, ଲେଖୁଲେଖ ପାଳିଧରି ଗାଉଛନ୍ତି)

ମାନସୀ—[ଗୀତର ଅନ୍ତରା)

କା’ରେ କାଉ ଖା’ରେ ଖାତ
ଗା’ରେ ପରା ଗାଈ,
ଘା’ ରେ ଘାଇ ଲଗିବ ଯଦି
ମାଡ଼ି ଆସିବ ନ଼ଇ (ଘଇ)
ମାଡ଼ି ଆସିବ ନଇ ॥୧॥

ରାମ—ଘାଇ ଭଙ୍ଗିଲେ ଆମର କଣ ହେବ ?

ଶ୍ୟାମ—ଜାଣିନୁ ? ବିଲବାଡ଼ି ବୁଡ଼ିଯିବ- ଖାଇବାକୁ ଘଟ ମିଳିବନି ।

ମାନସୀ—କରେକ୍‌··· (ପୁଣି ଗାଇଛି)

ଘ୍‌'ରେ ଗୃହ ଛା'ରେ ଛାଇ
ଜାରେ ପରା ଜାଠ;
ଦୁନିଆଁ କଥା ଜାଣିବ ଭଇ
ପଢ଼ିଲେ ସିନା ପାଠ (ଭଇ)
ପଢ଼ିଲେ ସିନା ପାଠ ॥୨॥

ରାମ—ଶ୍ୟାମ ! ମାନି ଠିକ୍ କଥା କହୁଛି ।

ଶ୍ୟାମ—ମଧୁବାବୁ ପରା ତାକୁ ସବୁ ଶିଖେଇଛନ୍ତି.... ଦେଖୁନୁ କେମିତି ଇଂଲିଶ କହୁଛି ।

ମାନସୀ—ବାଜେ କଥା ଛୁହନା- ପାଠ ପଢ....

(ଗୀତ) ଆମେ ମନ ଦେଇ ପାଠ ପଢ଼ିବା'
କାଳିଆ ଘୋଡ଼ାରେ ଚଢ଼ିବା'
ମଧୁବାବୁ ସଙ୍ଗେ ଲଢ଼ିବା-
ମଧୁବାବୁ ସଙ୍ଗେ ଲଢ଼ିବା....

ରାମ—ମୁଁ ମଧୁବାବୁ ସଙ୍ଗେ ଲଢ଼ିବିନି । ସେ ଆମ ପାଇଁ ବେଢେ କାମ କରୁଛନ୍ତି...

ମାନସୀ—ଆରେ ଏ ମଧୁବାବୁ ନୁହଁନ୍ତି- ମଧୁ ବାରିଷ୍ଟର....

ରାମ—ମଧୁବାରିଷ୍ଟର କିଏ ଶ୍ୟାମ ?

ଶ୍ୟାମ—ବୁଦ୍ଧୁଟା କିରେ ? ମାନୀ ଜାଣିଛି- ତୁ ଜାଣିନୁ ?

ରାମ—ମାନୀକୁ ତ ମଧୁମିଶ କେତେ ଆଦରରେ, ପାଠ ପଢ଼ାଉଛନ୍ତି- ମୋତେ କିଏ ପଢ଼ାଉଛି ?

ମାନସୀ—ବାଜେ କଥା ଛୁହନା'- ପଢ଼ିବତ ପଢ । ନହେଲେ ମୁଁ ଯାଉଛି... (ରାଗିଗଲି ଯାଉଥିଲା)

ରାମ—ଆରେ ! ଶୁଣ ମାନୀ- ଶୁଣ··· (ଦୌଡ଼ିଯାଇ ଆଗ ଓଗାଳିଛି)

ଶ୍ୟାମ—ରାଗିଗଲ ଆମ ଗେହ୍ଲୀ ଭଉଣୀ··· (ଉଠିଛି)

ରାମ—ମୋ କଥା ଶୁଣିବୁନି ?

ମାନସୀ—ନାଁ, ମୁଁ କିଛି ଶୁଣିବିନି··· ତୁମେ କାହିଁକି ମୋତେ ଥଟ୍ଟା କରିବ ଯେ···

ରାମ—ଥଟ୍ଟା କେତେବେଳେ କଲି ?

ଶ୍ୟାମ—(ଯାଇ) ଆମ ଗେହ୍ଲୀ ଭଉଣୀକୁ ଟିକିଏ ଗେହ୍ଲା କରିଦିଅ ରାମ ଭାଇ···

ରାମ—କରେଁ··· (ମାନସୀକୁ ଧରି ଗୀତ ଗାଇ ନାଚ କରିଛି)

## ଗୀତ

ଝାଁରେ ଗୁନ୍ଦ, ଝାଁରେ ଛାଇ
　　　ଝାଁରେ ପରା ଝାଠ,
ବାହାରୁ ହୋଇ ଗଲେଣି ମାନୀ
　　　କିଏ ପଢ଼ାଇବ ପାଠ (କହ)
　　　କିଏ ପଢ଼ାଇବ ପାଠ....

(ଦୁଇ ଭାଇ ମାନସୀକୁ ଧରି, ବାରମ୍ବାର ଗୀତ ଗାଇ ଆନନ୍ଦରେ ନାଚିଛନ୍ତି । ଗୀତ ନାଚ ଶେଷରେ ପ୍ରବେଶିଛି ମଧୁମିଶ୍ର)

ମଧୁ—ଭେରୀଗୁଡ଼, ଭେରୀଗୁଡ଼- ଆଜି ଦେଖିଲି ମୁଁ ସୁଭଦ୍ରା ସହିତ ରାମ ବଳରାମଙ୍କ ଖେଳ···

ମାନସୀ—(ମଧୁକୁ ଦେଖି, ଝୁମ୍ପୁଡ଼ି ଭିତରକୁ ଦୌଡ଼ି ପଳାଇଛି)

ରାମ—ଆରେ ଶୁଣୁନୁ ମାନୀ ! ଶୁଣ···

ଶ୍ୟାମ—ମଧୁବାବୁଙ୍କୁ ଆମ ମାନୀର ଭାରୀ ଲାଜ (ରାମର କାନ ପାଖରେ କିଛି କହିଛି )

ରାମ—ଘରି ଭଲ ହୁଅନ୍ତା ଶ୍ୟାମ ! ଘରିଭଲ ହୁଅନ୍ତା··· କହନ୍ତୁ ତୁ
ମଧୁବାବୁଙ୍କୁ···

ମଧୁ—କହିବା ଦରକାର ନାହିଁ । ମୁଁ ଡିସାଇଡ଼ କରିଛି– ଆଜିଠାରୁ
କିଛିଦିନ ଏଇଠି ରହି ଗବେଷଣା କରିବି ।

ରାମ—(ଆନନ୍ଦରେ) ସତରେ ମଧୁବାବୁ ! ଆପଣ ଏଠି ରହିବେ ?

ମଧୁ—ଦରକାର ପଡ଼ୁଛି ରାମ– ଏଇଠି ରହି ଖରାବର୍ଷା, ଶୀତ
କାକର ଖାଇବାର ଯନ୍ତ୍ରଣା ଅଙ୍ଗେ ନଲିଭାଇଲେ, ମୋର
ଅନୁଭୂତି ଆସିବ କୁଆଡ଼ୁ ? ଗବେଷଣା ପୁସ୍ତକରେ ମୁଁ
ଲେଖିବି କଣ ?

ରାମ—ଆପଣ ରହନ୍ତୁ ମଧୁବାବୁ ! ଆମର କୌଣସି ଆପତ୍ତି ନାହିଁ ।

ଶ୍ୟାମ—ଆପଣ ଯାହା କହିବେ– ଆମେ ତାହା ମାନିବୁ ।

ରାମ—ଆମ ଭଉଣୀ ମାନେ ମଧ୍ୟ ଆପଣଙ୍କୁ ସାହାଯ୍ୟ କରିବ ।

ମଧୁ—ଥ୍ୟାଙ୍କ୍ ୟୁ ଭେରି ମଚ– ଦାଟ୍ସ ଅଲ ଓ୍ୱାଣ୍ଡ– ମଉସା
କୁଆଡ଼େ ଗଲେ ? ସେ କଣ ତାଙ୍କ ସ୍ୱପ୍ନ କଥା ଲେଖିବାକୁ
କହୁଥିଲେ···

ରାମ—ହେଇତ ଶୋଇଛନ୍ତି । ଉଠନ୍ତୁ– ଲେଖିବେ···

ଶ୍ୟାମ—କ'ଣ ଲେଖିବେ ମଧୁବାବୁ– କେତେ ଲେଖିବେ ? ବାପାତ
ସବୁଦିନ ରାମ ରାଜ୍ୟର ସ୍ୱପ୍ନ ଦେଖୁଛନ୍ତି ।

ମଧୁ—ତୁମେ ତାଙ୍କ ପୂର୍ବଜନ୍ମ କଥା ଜାଣିଛକି ନାହିଁ ?

ଶ୍ୟାମ—ଜାଣିଛି । ସେ ପରା ଆପଣଙ୍କୁ କହୁଥିଲେ···

ମଧୁ—ଏ ଜନ୍ମରେ ତାଙ୍କର ଏ ଅବସ୍ଥା ଦେଖି, ମୋତେ ଭରି ଦୁଃଖ
ଲାଗେ ଶ୍ୟାମ– ଭକ୍ତିରେ ଆପଣାଛାଏ ମୁଣ୍ଡ ମୋର ନଇଁ
ଯାଏ ତାଙ୍କ ପାଦତଳେ । ଆଉ ଏମ୍ ସିଓର– ଦିନେନା'
ଦିନେ ମୁଁ ତାଙ୍କୁ ଲୋକ ଲୋଚନକୁ ଆଣିବି··· (ଚିନ୍ତିତ)

ସରକାରଙ୍କଠାରେ ରାସ୍ତାକଡ଼ ମଣିଷର ନାଯ୍ୟ ଦାବୀ ଜଣାଇବି ।
ଏଇ ଦେଶ, ଏଇ ମାଟିରେ ତୁମର ମଧ୍ୟ ବଞ୍ଚିବାର ଅଧିକାର
ଅଛି ।

ମାନସୀ—(ହେମ୍‌ତି ଭିତରୁ ଆସି) ଭାଇ ଭାତ ବାଢ଼ିବି ?

ରାମ---ହଁ, ବାଢ଼··· ଭାରି ଭୋକ ଲାଗିଲାଣି । ବାପା ପରେ
ଖାଇବେ । (ମାନସୀ ଚାଲିଯାଇଛି । )

ଶ୍ୟାମ—ମଧୁବାବୁ ଆଜି ଆମ ସାଥିରେ ଖାଇବେ ।

ମଧୁ—ମୁଁ ତ ହୋଟେଲରୁ ଖାଇ ଆସିଛି ।

ରାମ—ନାଁ, ଆପଣଙ୍କୁ ଆମ ସାଥୀରେ ଖାଇବାକୁ ପଡ଼ିବ । ମାଂସ
ପଲାଉ ନୁହେଁ ମ— ଶାଗଭାତ···

ମଧୁ---ସେଇତ ମୋ ପାଇଁ ଅମୃତ । ହଉ ମଉସାଙ୍କୁ ଉଠାଅ....

ରାମ—ସେ ପରେ ଖାଇବେ । ଆପଣ ଆସନ୍ତୁ... (ମଧୁର ହାତଧରିଛି)

ଶ୍ୟାମ---ଚାଲନ୍ତୁ ମଧୁବାବୁ....

ମଧୁ—ହଉ ଚାଲ....

(ସମସ୍ତେ ଭିତରକୁ ଯାଇଛନ୍ତି । ଆଲୋକ କମିଯାଇ ସନ୍ଧ୍ୟାର
ସୂଚନା ଦେଉଛି । ଦୂରରୁ ଶୁଣା ଯାଉଛି ସନ୍ଧ୍ୟା-ଆରତୀର
ଶବ୍ଦ । ସାଇକ୍ଲୋମାସିନରେ ଦେଖା ଯାଉଛି ସମୟ ଚକ୍ରର
ଛାୟା । ଅନ୍ତରାଳରୁ ଶୁଣାଯାଉଛି ସମୟର ସ୍ୱର । )

ସମୟରସ୍ୱର— ମୁଁ ସମୟ କହୁଛି- ସମୟ । ଦିନର ଆଲୋକରେ ଯେଉଁ
ମଦମାଂସ ଲୋଭୀ ନିଶାଚରମାନେ ସୁପ୍ତାବସ୍ଥାରେ ରହିଥାନ୍ତି-
ସନ୍ଧ୍ୟାର ଅନ୍ଧାର ପରଶରେ ସେମାନେ ଜାଗି ଉଠନ୍ତି ।
ପଶୁ ପ୍ରବୃତ୍ତି ତାଙ୍କର ଉଜ୍ଜୀବିତ ହୁଏ । ପବିତ୍ର ଅନ୍ଧାର ଭିତରେ
ସେମାନେ କରିଚାଲନ୍ତି ଅନେକ ଅଧର୍ମ- ଅନେକ ପାପ ।
ତାଙ୍କର ଶିକାର ହୁଅନ୍ତି- ନିରୀହ, ସରଳ, ଶାନ୍ତ ମଣିଷ ।

ମୁଁ ସବୁ ଦେଖେ-ସବୁ-ମୋ'ର ଅଦେଖା ହାତନେ ଲେଖି ରଖେ ଅପେକ୍ଷା କରେ ଚରମ ସୀମାକୁ । (ସମୟ ଚକ୍ରର ଛାୟା ଭେଦିଭାଇ ଯାଇଛି । ଭାସି ଆସିଛି ଦୂର ମନ୍ଦିରରୁ ଶଙ୍ଖ ଘଣ୍ଟାର ଶବ୍ଦ । କିଛି ସମୟ ପରେ ଆସିଛି ନେତା ନଟବର ଦାସ । ଚତୁର୍ଦ୍ଦିଗକୁ ଦୃଷ୍ଟିପକାଇବା ପରେ, କୁବେରଙ୍କୁ ଶୋଇବାର ଦେଖି, ତା' ପାଖକୁ ଯାଇଛି ।)

ନଟବର—(ହଲାଇ) ହଇରେ କୁବେରବୁଢ଼ା- କୁବେରବୁଢ଼ା··· ଆରେ ଉଠ୍-ଉଠ୍··· ସଞ୍ଜ ନହୋଉଣୁ କଣ ଶୋଇ ପଡ଼ିଲୁଣି । ଆରେ ଉଠ-ଉଠ-ଉଠ.... (କୁବେରହସ୍ତ ଟାଣି ଉଠାଇଛି)

କୁବେର—(ଉଠି) ଓହୋଃ ଓଃ··· ନଟବର ବାବୁ– ଆପଣ ଏତେବେଳେ

ନଟବର—ମୁଁ କହିଥିଲି ନା' ସଞ୍ଜବେଳକୁ ଆସିବାକୁ ? ବୁଝିଲୁ– ମହାମନ୍ତ୍ରୀ ତୋ ବାର୍ଦ୍ଧକ୍ୟ ଭତ୍ତା ମଞ୍ଜୁର କରିଦେଲେ । ତା' ସାଙ୍ଗକୁ ତୋ' ଝିଅର ବାହାଘର ମଧ୍ୟ ସେଟଲ୍ ହୋଇଗଲା···

କୁବେର—ମୋ ଝିଅର ବାହାଘର ?

ନଟବର—ସେଟଲ ହୋଇଗଲା । ମହାମନ୍ତ୍ରୀ ମୋତେ ବାଧ୍ୟ କରିବାରୁ ମୁଁ ବାହା ହେବାକୁ ରାଜି ହୋଇଗଲି ।

କୁବେର—ନଟବରବାବୁ ? ଆପଣ···

ନଟବର—ମୁଁ ଜାଣେ, ତୁ ମୋତେ କମା ଭୁଲ ବୁଝିବୁନି । ମୋତେ ବାହାହେଲେ, ତୋ' ଝିଅ ଆନନ୍ଦରେ ଘର ସଂସାର କରିବ । ତୋର ମଧ୍ୟ ଭଦ୍ରସମାଜରେ ଓଜନ ବଢ଼ିଯିବ । କହିବୁତ- ଆଜି ମୁଁ ବାହାହୋଇ ପଡ଼ିବି । ଗୁରୁକହିଛନ୍ତି- ଶୁଭସ୍ୟ ଶୀଘ୍ରଂ···

କୁବେର—ମୁଁ ଟିକିଏ ପୁଅ ଝିଅଙ୍କୁ ପଗ୍ଭରେଁ...

ନଟବର—ହଁ, ପଗ୍ଭର-ପଗ୍ଭର... ମୁଁ ଜାଣେ, ତୁ ମୋତେ···

କୁବେର—(ଡାକିଛି) ଅରେ ରାମ ! ଶ୍ୟାମ ! ରାମ, ଶ୍ୟାମ....

ରାମ—(ଭିତରୁ ଆସି) କଣ ହେଲା ବାପା ?

କୁବେର—ଆରେ ନଟବାବୁ ଆମ ମାନୀଙ୍କୁ ବାହାହେବେ ବୋଲି କହୁଛନ୍ତି...

ରାମ—(ରାଗି) ଶଳା ନଟିଆ ! ନେତା ଦେଖାଉଛୁ ? (ଦୌଡ଼ିଯାଇ ତାର କଲର ଧରି) କହ ଶଳା ! ମାନୀଙ୍କୁ ବାହାହେବୁ ନା ପୋଇଲି କରି ରଖିବୁ ?

ନଟବର—ତୁ ରାଗୁଛୁ କାହିଁକି ରାମ ? ଛାଡ଼ ମୁଁ କହୁଛି- ଛାଡ଼···

ରାମ—ଶଳା ଏତେ ଦିନପରେ ହାବୁଡେ ପଡ଼ିଛୁ- ତୋତେ ଛାଡ଼ିଦେବି ?

ଶ୍ୟାମ—(ଭିତରୁ ଆସି) ମାର ରାମଭାଇ- ଶଳାକୁ ମାର···

ରାମ—ଶଳା ପାପୀ, ତୋ ପେଟରେ ଏତେ କପଟ ଅଛି ? ଆସିଛୁ ବାହାହେବାକୁ··· (ମୁଥି ମାରିଛି ତାର ପେଟ ଓ ମୁହଁକୁ)

ନଟବର—(ଯନ୍ତ୍ରଣାରେ) ଉଃ, ଉଃ- ପୋଲିସ ! ପୋଲିସ···

ରାମ—କୋଉ ପୁଲିସ ତୋ' ପିଠିରେ ପଡ଼ିବ- ମୁଁ ଦେଖିବି....
(ଧରି ପୁଣି ମୁଥା ଓ ଗୋଇଠା ମାରିଛି)

ନଟବର—ଉଃ, ହଃ··· ପୋଲିସ ! ପୋଲିସ- ପୋଲିସ...

କୁବେର—ଅରେ ରାମ ! ଛାଡ଼ିଦେ'··· ନଟବାବୁଙ୍କୁ ଛାଡ଼ିଦେ'- ଛାଡ଼ିଦେ
(ଛଡ଼ାଇବାକୁ ଗଲାବେଳେ ଶ୍ୟାମ ବାଧା ଦେଉଛି)

ଶ୍ୟାମ—ତୁମେ ଚୁପ୍ ରୁହ ବାପା ! ଟାଉଟର ନଟିଆ ପାନେ ପାଉ....

ନଟବର—ହେଉଟି ଶ୍ୟାମ ! ଏକା ମାଘରେ ଶୀତ ଯାଏନି.... ତୁମ ଭଉଣୀକୁ କୋଉଠି ବାହାକରେଇବ- ମୁଁ ଦେଖିବି....

ରାମ—ଶଳା ନଟିଆ ! ଆହୁରି ଫୁଟାଣୀ ମାରୁଛୁ ? ତୁ ଶଳା ଆମ ମାନୀକୁ ଯୋଗ୍ୟ ? (ପୁଣି ଟାଣିନେଇ ମାରିଛି)

ନଟବର—(ଭୟରେ) ପୋଲିସ ! ପୋଲିସ- ପୋଲିସ···

ହରି—(ହୁଇସିଲମାରି ପ୍ରବେଶିଛି) କଣ ହେଲା ? କଣହେଲା ରାମ·

ତୋର ଏତେ ସାହସ ? (ପିଟି) ଛାଡ ଶଙ୍କା ! ନଟବର ବାବୁଙ୍କୁ ଛାଡ ... (ରାମ ହାତରୁ ନଟକୁ ଛଡ଼ାଇ ନେଉଛି)

ନଟବର—ତୁମେ ସାକ୍ଷୀ ରହିଲ ସିପାହୀଙ୍କ ଭାଇ... ଏ ଶଳା ଛୋଟଲୋକ ଗୁଣ୍ଡାଙ୍କୁ, ଯଦି ମୁଁ ପାଣି ନପିଇଲେଣି– ମୋ' ନାଁ, ନେତା ନଟବର ଦାସ ନୁହେଁ... (ଖୋଲିଯାଇଥିବା କଛା ମାରିଛି)

ରାମ—ଶଳା ! ଯାଉଛୁ କି ନାହିଁ ... (ଗୋଡ଼େଇଛନ୍ତି)

ନଟବର—ଯାଉଛି, ଯାଉଛି– (ମାଡ ଭୟରେ ଦୌଡ଼ି ପଳାଉଛି)

ରାମ—(ତା' ବାଟକୁ ଗୃହିଁ) ଶଳା ! ନିଜେ ଛୋଟ କାମ କରୁଛି– ଆମକୁ କହୁଛି ଛୋଟ ଲୋକ...

(ମଧୁ କୁମ୍ଭି ଭିତରୁ ଆସି, ନିରବରେ ଠିଆ ହୋଇଛି)

କୁବେର—ତୁମେ କମା ଭଲ କାମ କରୁନାହଁ ରାମ ଶ୍ୟାମ... ଅନ୍ୟାୟ ବିରୁଦ୍ଧରେ ଗାନ୍ଧିଜୀ କଣ ଏମିତି ଲଢୁଥିଲେ ?

ଶ୍ୟାମ—ତୁମେ ଚୁପ୍ ହୁଅ ବାପା... ଗାନ୍ଧି କେବେଠୁଁ ମଲେଣି–

ମଧୁ—ରାମ ଶ୍ୟାମ ଯାହା କରୁଛନ୍ତି– ଠିକ୍ କରୁଛନ୍ତି ମଉସା...

ହରି—(ମଧୁପ୍ରତି) ମାମୁଁଘର ଦେଖିନୁ କିରେ ପୁଅ ?

ରାମ—(ହଠାତ୍ ହରିହାତରୁ ବାଡ଼ି ଛଡ଼ାଇ ନେଇ) କହ ଶଳା ହରିଆ ! ମୋତେ କାହିଁକି ପିଟିଲୁ ?

ହରି—ହେଇଟି ରାମ ! ମୋତେ ଶଳା କହୁଛୁ– ଚିହ୍ନିଛୁଟି ମୁଁ କିଏ ?

ରାମ—ଶଳା ବେଶି ଫୁଟାଣୀ ମାରନା କହୁଛି... (ତା' ଗୋଡ଼କୁ ପାହାରେ ପିଟିଛି ।)

ହରି—ଦେଖରାମ ! ପୋଲିସ ଦେହରେ ହାତ ଲଗାଉଛୁ– ପରିସ୍ଥିତି ଭରି ଖରାପ ହେବ– ମୁଁ ବର୍ତ୍ତମାନ ଡ୍ୟୁଟିରେ ଅଛି ।

ଶ୍ୟାମ—(ଟାଣିନେଇ) ନାହିଁମ ହରିବାବୁ ! ତୁମକୁ ଆମେ କମା କାଡ଼େଇବୁ ନାହିଁ । ତୁମ ସାଙ୍ଗରେ ଖାଲି ଥଟ୍ଟା ହେଉଛୁ ନା... (ମାରିଛି ତା' ପିଠିକୁ ବିଧାଏ)

ହରି—ଆଃ, ହେଇଟି ଶ୍ୟାମ ! ଭଲ କଥା କରୁନ୍- ଥାନାରେ ଯଦି ଆଡାଲା ଦେବିନା- ତୋ ଦାଦାଗିରି ଛାଡ଼ିଯିବ ।

ଶ୍ୟାମ—ଆମେ ପରା ତୁମ ଶଳା ? ଜାଣିନ- ଶଳାମାନେ ଭିଣୋଇଙ୍କୁ କେମିତି ବିଧା ମାରନ୍ତି···

ହରି—ତା'ହେଲେ, ମାର ଆଉ ବିଧାଏ···

ଶ୍ୟାମ—ଥ୍ୟାଙ୍କ ୟୁ'··· (ମାରିଛି)

ହରି—ଓହୋଃ, ଆବେ ଟିକିଏ ଆସ୍ତେକି' ମାର···

ଶ୍ୟାମ—ତୁମେ ପରା ଆମ ଭଉଣୀ ମାନୀଙ୍କ ବାହାହେବ ? (ତା'ଓଠକୁଧରି ଗେଲ କରିଛି)

ହରି—ହଁ, ବାହାହେବି···

ରାମ—ଶଳା ! ରାସ୍ତା କଡ଼ର ଝିଅ ଗୁଡ଼ାଙ୍କ ଭରି ଶସ୍ତା ନା ? (ଟୋଣଆଣି ଗୁଡେ଼ଇ ତୁଡେ଼ଇ ବାଡେ଼ଇଛି ) ଆଜି ତୋ' ବାହାଘର ନିଶା ଛଡ଼ାଇ ଦେଉଛି– ଶଳା ! ଏତେ ତୋର ସଉକ୍- ଏତେ ତୋର ପ୍ରେମ···

ହରି—(ଛାଟିପିଟିହୋଇ) ଓଃ, ଓଃ ରାମ– ରାମ ମୁଁ ତୋତେ ଛାଡ଼ିବିନି- ମୁଁ ତୋତେ ଛାଡ଼ିବିନି... ମୋ ନା' ହରି ମହାନ୍ତି...

କୁବେର—ଛ ଡ଼ି ଦେ'ରେ ରାମ ! ହରିବାବୁଙ୍କୁ ଛାଡ଼ିଦେ··· ତାଙ୍କୁ ବାଡେଇଲେ– ଆମେ ଏଠି ରହିପାରିବାନି···

ଶ୍ୟାମ—ତୁମେ ଚୁପ୍ ହୁଅ ବାପା... ଏମାନଙ୍କ ଆଖି ଆମ ମାନସୀ ଉପରେ··· ଏମାନଙ୍କୁ ମାଡ଼ଦରକାର-

ମଧୁ - କରେକ୍ଟ···

ହରି—ତୁ ସାକ୍ଷୀ ରହିଲୁ କୁବେର- ଏ ଶଳା ଦୁଇଟାଙ୍କୁ ମୁଁ ଯଦି ଘଣା ନପେଲେଇଛି···

ରାମ—ଚୁପ୍‌ବେ' ଶଳା ହରିଆ··· (ବାଡେ଼ଇଛି)

ହରି—ଓହୋଃ··· (ଆଉଁସି ଅଣ୍ଟାକି ହୋଇଛି) ହଉ, କେତେ ମାରୁଛ·

ମାଉ··· ତୁମ ଦୁଇଟାଙ୍କୁ ଗାରଦରେ ପୁରାଇ ଯଦି ଅଦା ଛେଚିଲାପରି ନଛେଚିଚି– ମୁଁ ଗେଡୁ ମହାନ୍ତିର ପୁଅ ନୁହେଁ । ସହରରେ ଯେତେ ସବୁ ଚୋରି, ଡକାୟତି, ମର୍ଡର ହେଉଛି– ସବୁ ଶଳେ ତୁମେହିଁ କରୁଛ....

ଶ୍ୟାମ—ଧର ରାମ ଭାଇ ! ଶଳାଙ୍କୁ ନଈଆଡ଼େ ନେଇଯିବା···

ରାମ—ହଁ, ଶଳା କଳିଯୁଗ କୃଷ୍ଣଙ୍କୁ ଲଙ୍ଗଳାକରି ଗଙ୍ଗାସ୍ନାନ କରେଇ ଦେବା... (ଦୁହେଁ ଦୌଡ଼ିଯାଇ, ହରି ମହାନ୍ତିର ଦୁଇବାହୁକୁ ଧରିଛନ୍ତି)

ଶ୍ୟାମ—ଚାଲଶଳା ମାମୁ ! ଲଙ୍କେଶ୍ୱରଙ୍କୁ ଦର୍ଶନ କରିବୁ ଚାଲ...

ହରି—ହେଇଟି ରାମଶ୍ୟାମ ! ଜମା ଭଲକାମ କରୁନ– ମୁଁ ତୁମ ଭିତିରେ ଅଛି । ମୋତେ ଛାଡିଦିଅ କହୁଛି– ମୋତେ ଛାଡ଼ିଦିଅ...

ରାମ—(ବାଡ଼େଇ) ଚାଲ ଶଳା ! ନଈ କୂଳରେ ଡ୍ୟୁଟିକରିବୁ... (ଦୁହେଁ ହରି ମହାନ୍ତିଙ୍କୁ ଟେକିଧରି ଚାଲିଛନ୍ତି)

ହରି—ଆରେ ମୋତେ ଛାଡ଼ିଦିଅ ରାମଶ୍ୟାମ- ମୋତେ ଛାଡ଼ିଦିଅ....

କୁବେର—ଆରେ ଛାଡ଼ିଦିଅ ରାମଶ୍ୟାମ– ହରିବାବୁଙ୍କୁ ଛାଡ଼ିଦିଅ ... ଆରେ ମୋ କଥା ମାନରେ ରାମଶ୍ୟାମ– ମୋ କଥା ମାନ... (ହରି ମହାନ୍ତିଙ୍କୁ ନେଇ ରାମଶ୍ୟାମ ଚାଲିଯାଇଛନ୍ତି, ତାଙ୍କପଛରେ ଗୋଡ଼ାଇ କୁବେର ମଧ୍ୟ ଚାଲି ଯାଇଛି)

ମଧୁ—(ତାଙ୍କ ବାଟକୁ ଚାହିଁ) ଏଇ ହେଲା ମୁକ୍ତାବିହାର ଶୁଭଉଦ୍‌ଘାଟନ ପ୍ରତିବାଦର ଅୟମାରମ୍ଭ... ଦେଖାଯାଉ– ଏହାର ଶେଷ କେଉଁଠି··· (ଚିନ୍ତିତ)

ମାନସୀ—(ଝୁମ୍ପୁଡ଼ି ଭିତରୁ ଜଳନ୍ତା ଦୀପଧରିଆସି, ଗାନ୍ଧିଙ୍କ ପାଦତଳେ ଥୋଇ ପ୍ରଣାମକରି ମଧୁଙ୍କୁ କହିଛି) ମୋତେ ଭାରି ଭୟ ଲାଗୁଛି ବାବୁ··· ଆମେ ଏଠି ଆଉ ରହିପାରିବୁନି...

ମଧୁ—ସେ କଥା ମୁଁ ମଧ୍ୟ ଜାଣୁଛି । ତୁମ ସମସ୍ତଙ୍କୁ ନେଇ, ମୁଁ ମୋ ଘରର ରକ୍ଷାକର୍ତ୍ତା ସାଜିଛି । କିନ୍ତୁ ଏଥିରେ ଚାଷୀକଲ୍ୟାଣ ସବୁ ମଣିଷଙ୍କ ସମସ୍ୟାର ସମାଧାନ ହେବନି । ଏଇଠି ହିଁ ରାବଣ ଓ କଂସର ବଂଶଧରମାନଙ୍କ ସହିତ ଆମକୁ ସଂଗ୍ରାମ କରିବାକୁ ପଡ଼ିବ— ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଆମକୁ ହିଁ ଲଢେଇ କରିବାକୁ ପଡ଼ିବ । ତୁମେ ଭୟ କରନା ମାନୀ ! ଆଜିଠାରୁ ମୁଁ ଏଇଠି ରହୁଛି···

ମାନସୀ—ସେମାନେ ବଡ଼ଲୋକ ବାବୁ ! ତାଙ୍କ ସହିତ ଲଢିବାକୁ ଆମେ କ'ଣ ସମର୍ଥ ?

ମଧୁ—ସେ ଚିନ୍ତା ପରେ କରିବା··· ମୁଁ ଅଡ଼ଲା ଦେବାକୁ ଥାନାକୁ ଯାଉଛି । ରାମ ଶ୍ୟାମ ଫେରିଲେ— କହିବ । ମୁଁ ଆସିବା ପର୍ଯ୍ୟନ୍ତ, ସେମାନେ ଏଇଠିଥିବେ । କୁଆଡ଼େ ଯିବେନି···

ମାନସୀ—ହଁ, ବାବୁ !

ମଧୁ—ତୁମେ ଭିତରକୁ ଯାଅ— ମୁଁ ଅସୁଛି··· (ପ୍ରସ୍ଥାନ)

ମାନସୀ— (ମଧୁବାଟକୁ ଗୁହିଁ) ହେ ଜଗନ୍ନାଥ, ତୁମେ ହିଁ ଗରିବର ଭରସା··· (ପ୍ରଭୁଙ୍କୁ ହାତଯୋଡ଼ିଛି)

ବୈରାଗୀ—(ଅନ୍ତରାଳରୁ) ଓଁ ନମଃ ଶିବାୟ-ଓଁ ନମଃ ଶିବାୟ-ଓଁ ନମଃ ଶିବାୟ···

ମାନସୀ—(ଦୂରକୁ ଗୁହିଁ) ଭଣ୍ଡବାବାଜୀ ବୈରାଗୀ ବାବା ଅସିଲାଣି । ଘରେ କେହି ନାହାନ୍ତି– କଣ ମୁଁ କରିବି··· (ଝୁମ୍ପୁଡ଼ି ଭିତରେ ପଶି କବାଟ କିଳିଦେଇଛି)

ବୈରାଗୀ—(ପ୍ରବେଶି) ଓଁ ନମଃ ଶିବାୟ-ଓଁ ନମଃ ଶିବାୟ···
(ସନ୍ଧ୍ୟାଦୀପ ଦେଖି) ଏଁ, ଭାଙ୍ଗି ବୁଢ଼ାର ପାଦତଳେ ସନ୍ଧ୍ୟା ଦୀପ !!! ଦେଖ ଭକ୍ତିର ନିଦର୍ଶନ··· ଭଲ, ଭଲ···

(ଝୁମ୍ପୁଡ଼ି ପାଖକୁ ଯାଇ ଡାକିଛି) ଭକ୍ତ କୁବେର ଘରେ ଅଛ ?
ହୋ ଭକ୍ତ କୁବେର-ଶିଷ ସାଧକ ବାଲମିକ ମୋଚିର ବଂଶଧର
ଶୋଇ ଗଲଣିକି କଣ ବା' ? ଆରେ ଆସ... ବାବା
ଲଙ୍ଗେଶ୍ୱରଙ୍କର ପାଦୁକ ନିଅ.... (ଉତ୍ତର ନପାଇ) କାହାରି
କଣ ଓର ଶବଦ ନାହିଁ- ଗଲେ କୁଆଡେ ? ଜାଗାଟା କେମିତି
ଛିନା ଛିନା, ଓଜନିଆ ଲାଗୁଛି । ମନେ ହେଉଛି- ଯେମିତି
ଭୟଙ୍କର ମଶାଣୀଟାଏ... (ନାକପୁଡ଼ାରେ ନିଶ୍ୱାସ ବାରି)
ହୁଁ, ଏଇଟା ବାବା ଭୂତନାଥଙ୍କ ବିଚରଣ ବେଳା.... ଏ
ବେଳାରେ ଡାହାଣୀ ଯୋଗିନୀମାନେ ପ୍ରବଳ ହୁଅନ୍ତି ।
ପ୍ରେତାତ୍ମା ଗୁଡ଼ାକ ପବନରେ ଉଡ଼ିବୁଲନ୍ତି । ମୋତେ ଏକୁଟିଆ
ଦେଖି, ନଦୀ ପଠାରେ ଘୁରିବୁଲୁଥିବା ପ୍ରେତାତ୍ମାଟା ଯଦି
ସବାର ହୋଇଯାଏ.... (ଭୟରେ) ନାଁ ନାଁ, ଏଠୁଁ ମୋର
ପଳାଇବା' ଉଚିତ... (ଯିବାକୁ ଉଦ୍ୟତ)
(ହିରାର ଆତ୍ମା ମଣିଷ ରୂପନେଇ ଅନ୍ତରାଳରୁ ଡ଼ାକିଛି)

ହିରାସ୍ୱର—(ଅନ୍ତରାଳରୁ) ଚାଲିଯାଅନା' ବୈରାଗୀବାବା....

ବୈରାଗୀ—ଏଁ... (ଲେଉଟି) କିଏ ତୁମେ ମାତା ?

ହିରାସ୍ୱର—ମୋ ବ୍ୟତୀତ, ଘରେ ଆଉକେହି ନାହାନ୍ତି ବାବା...

ବୈରାଗୀ—ଭଲ, ଭଲମାତା ଭଲ... ଘରେ କେହି ନଥିବାଟା ଖୁବ ଭଲ...

ହିରାସ୍ୱର—ଅବେଳରେ କାହିଁକି ଆସିଲବାବା ?

ବୈରାଗୀ—ତୁମପାଇଁ ଗୋଟିଏ ବ୍ରହ୍ମ କବଚ ଡ଼େଉଁରିଆ ଆଣିଛି ରାଧିକେ...
ଡେଉଁରିଆର ମହିମା ଏମନ୍ତ ଯେ'- ଡରମା ଚମକିବ ନାହିଁ....
ଖରାପ ସ୍ୱପ୍ନ ଦେଖିବ ନାହିଁ... ଭୂତ ପ୍ରେତ ପାଖକୁ ଆସିବେ
ନାହିଁ- ଇତ୍ୟାଦି ଇତ୍ୟାଦି । ଏ ଗଛରେ କୁଆଡ଼େ ତୁମ ଅପା
ହିରାର ଭୂତ ଅଛି... ?

ହିରାରଷର- ଅଛିବାବା, କିନ୍ତୁ କାହାରି ସେ କିଛି କ୍ଷତି କରେନା' ତୁମକୁ ସେ ଘରି ରଇ ଯାଏ···

ବୈରାଗୀ—ତା'ହେଲେ, ଆସ ମାଇଁ ଡାର୍ଲିଂ ମାନିନୀ ରାଧିକେ- ଏ ନିର୍ଜନ ବେଳାରେ ଆମେ ଦୁହେଁ ଚାଲିଯିବା ଶ୍ରୀକୃଷ୍ଣଙ୍କ ଲୀଳାଭୂଇଁ ବୃନ୍ଦାବନ ଧାମକୁ । ସେଇଠି ଆମେ ଶ୍ରୀମତୀ ଶ୍ରୀପତି କେଳି ରଚନା କରିବା···

ହିରାରଷର—ଘରି ବଡ଼ିଆ ହେବ ମାଇଁ ଡ଼ାର୍ଲିଂ- ପୂର୍ବ ଜନ୍ମରେ ତୁମେ ମୋତେ ପ୍ରେମ କରି ପ୍ରତାରିତ କରିଥିଲ- ଆଜି ତୁମେ ମୋ ପାଲରେ ପଡ଼ିଛ ।

ବୈରାଗୀ—(ଆନନ୍ଦରେ) ତା'ହେଲେ, ମାନିନୀ ରାଧିକେ– ତୁମେ ଆଉ ମୁଁ··· ଜନ୍ମ ଜନ୍ମାନ୍ତର ସାଥୀ··· ?

ହିରାରଷର—ହଁ ଡ଼ାର୍ଲିଂ ! ମୁଁ ରେଡ଼ିହୋଇ ଆସୁଛି । ତୁମେ ବସି ତପସ୍ୟା କରୁଥାଅ···

ବୈରାଗୀ—ଭେରୀ ଭେରୀ ଗୁଡ଼··· ଏହାକୁ କହନ୍ତି ଗୋଲଡ଼ନ୍ ଚାନ୍ସ··· ଜୟ ବାବା ଶିବଶଙ୍କର– ଜୟ ବାବା ଶିବ ଶଙ୍କର··· (ତପସ୍ୟାରେ ବସି) ଭକ୍ତ ବୈରାଗୀର ମନବାଞ୍ଛା ପୂର୍ଣ୍ଣକର ବାବାଲିଙ୍ଗରାଜେଶ୍ୱର... (ଜପନ୍ତି) ଜୟ ଶିବ ଶଙ୍କର- ଜୟ ଶିବ ଶଙ୍କର(ପଜ)ଜଲଦୀ ଆସ ଡ଼ାର୍ଲିଂ ରାଧିକେ- ଶଳା ରାମଶ୍ୟାମ ଆସିଯିବେତ ମୋର ବାର ଉପରେ ତେର ବଜାଇ ଦେବେ । ଜୟ ଶିବ ଶଙ୍କର- ଜୟଶିବ ଶଙ୍କର··· (ଧ୍ୟାନମଗ୍ନ)

## THOUGHT OF BAIRAGI

(ଭୌତିକ କାଣ୍ଡ ଘଟିଛି ମଞ୍ଚଉପରେ । ଆଲୋକ ଘୂରିବା ଘୂରିଛି ବୈରାଗୀ ମୁଣ୍ଡ ମଣ୍ଡଳରେ । ସେ ବିମୋହିତ ହୋଇ ଯାଇଛି । ସାଇକ୍ଲୋମାରେ ଦେଖାଯାଉଛି ଯମୁନା କୂଳ,

ଢଳନ୍ତ ମୁହଁ, । ଆକାଶରେ ପୂର୍ଣ୍ଣିମା ଚନ୍ଦ୍ର । ସଂଗୀତର ତାଳେ ତାଳେ, ଅପସରୀ ବେଶରେ ଆସିଛି ହିରାର ଆତ୍ମା । କାମ ଶାସ୍ତ୍ରର ବିଭିନ୍ନ ମୁଦ୍ରା ପ୍ରଦର୍ଶନକରି, ବୈରାଗୀର ତପଭଙ୍ଗ କରିବା ପାଇଁ ସେ ନୃତ୍ୟ ଗୀତର ଆସର ଜମାଇଛି )

## ରାଗ ସଙ୍ଗୀତ

ଭଙ୍ଗତପ ତପୀବର ଖୋଲି ନୟନ
ପାଶେ ତବ ଉଭଦେଖ ନାରୀ ରତନ । ପଦ ।
ବସନ୍ତ ଦେଇଛି ମେଲି ରୂପର ହାଟ
କୁଆଁରୀ ମନଟା ମୋର ହୁଏ ଉଚ୍ଚାଟ ।
ତନକୁ ମୋର ଅତନୁ ମାରେଇ ବାଣ । ୧ ।
ଶୟନେ ସ୍ୱପନେ ଦିଶେ ତୁମରି ଛବି
ବିତିବ କିପରି ରାତି, ପାରୁନି ଭାବି ।
ଅରାତି ହୁଅନ୍ତି ମୋର ରତୀ ମଦନ । ୨ ।

(ହିରାର ନୃତ୍ୟ ଗୀତରେ ବୈରାଗୀର ତପସ୍ୟା ଭଙ୍ଗିଛି । ସେ ଉଠି ହିରାକୁ ପ୍ରେମ ଭିକ୍ଷା ମାଗିଛି । ହିରା ଧରା ନଦେଇ ବୈରାଗୀକୁ ଚକା ଭଉଁରୀ ଖେଳାଇଛି)

ବୈରାଗୀ— (ଥକିଯାଇ) ମୋତେ ଆଉ ହିନସ୍ତା କରନା ରାଧିକେ- ଧରା ଦିଅ- ଧରାଦିଅ ।

ହିରାଆତ୍ମା— ଛତିଶୋଧ··· ପୂର୍ବ ଜନ୍ମର ଛତିଶୋଧ··· (ଝିକ୍‌ମିକ୍ ଆଲୋକରେ ବୈରାଗୀ ସହିତ ଖେଳି ଅନ୍ତର୍ଦ୍ଧାନ ହୋଇଯାଉଛି)

THOUGHT OF BAIRAGI IS OVER

(ବୈରାଗୀର ଭାବନା ଭାଙ୍ଗିଯାଇଛି । ମଞ୍ଚ ଉପରେ ପଡ଼ିଛି ସଫା ଆଲୋକ । ଦେଖାଯାଉଛି– ପୂର୍ବପରି ବୈରାଗୀ ତପସ୍ୟାରତ । )

ବୈରାଗୀ—(ୟଟକୁ ଉତ୍‌ଥାନ ପତନକରି) ଜୟ ଶିବ ଶଙ୍କର– ଜୟ ଶିବ ଶଙ୍କର– ଜୟ···

(ରାମ ଶ୍ୟାମ ଦୁହେଁ ଆସି, ବୈରାଗୀକୁ ତପସ୍ୟାରତ ଦେଖି ମନ୍ତ୍ରଣା କରିଛନ୍ତି । ଛପିଛପି ଆସି ରାମ ଧରିନେଇଛି, ବୈରାଗୀର ଆଖି ଦୁଇଟିକୁ)

ବୈରାଗୀ—(ଚମକିଉଠି) ଜୟ ଶିବଶଙ୍କର··· ଆହାଃ, ହାତ ଦୁଇଟାତ ଅମୃତ । ଏତେ ଶୀଘ୍ର ତୁମେ ମୋ ପ୍ରେମରେ ପଡ଼ିଗଲ ରାଧିକେ ? ସତରେ କି ଭାଗ୍ୟ ମୋର··· ଏଥର ଚକ୍ଷୁରୁ ମୋର ଗ୍ରହସ୍ତ ତୁମର ଖୋଲିଦିଅ ମାନିନୀ ରାଧିକେ···

ରାମ—(ବୈରାଗୀର ଆଖିରୁ ହାତ କାଢ଼ି ନେଇଛି । ରାମଶ୍ୟାମ ଦୁହେଁ ଦୁଇ ପାର୍ଶ୍ୱରେ ରହି ହସି ଉଠିଛନ୍ତି ।)

ବୈରାଗୀ—(ଭୟରେ) ଏଁ, ତୁମେ ସବୁ କିଏ ?

ଉଭୟ—(ରାମଶ୍ୟାମ) ତୋ ଯମ··· (ଧରିନେଇଛନ୍ତି ବୈରାଗୀର ଦୁଇ ବାହୁକୁ ଦୁଇ ଦିଗକୁ । )

ବୈରାଗୀ—(ଛାନିଆରେ) ଜୟ ଶିବ ଶଙ୍କର– ଜୟ ଶିବ ଶଙ୍କର······ ମୁଁ ଜାଣେ ବାବା···ଘୋର କଳି କାଳରେ ଦୁଷ୍ଟ ଲୋକମାନେ ସାଧୁସନ୍ଥମାନଙ୍କୁ ଅନେକ ଦୁଃଖ କଷ୍ଟ ଦେବେ··· (ଛିଡ଼ା ଠିଆ ହୋଇଛି)

ରାମ—ତୁ ଶଳା କେମିତିକା ସାଧୁ···

ଶ୍ୟାମ—ଆମେ ଭଲଭାବେ ଜାଣୁ···· (ମୋଡ଼ିଛି ତା'ମୁଣ୍ଡକୁ)

ବୈରାଗୀ—ମୋତେ ଛାଡ଼ିଦିଅ ଭକ୍ତମାନେ– ବାବା ଲଙ୍ଗେଶ୍ୱର ତୁମର ମଙ୍ଗଳ କରିବେ···

ରାମ—(ତା'ମୁଣ୍ଡକୁମାରି) ତୁ ପରା ମାନୀଙ୍କୁ ମାତାଜୀ କରିବୁ ?

ବୈରାଗୀ—ହଁ, ହଁ ବାବା ! ଲଙ୍ଗେଶ୍ୱରଙ୍କର ସେଇ ଇଚ୍ଛା···

ଶ୍ୟାମ—ଶଳା ଭଣ୍ଡ ବାବାଜୀ ! ଲଙ୍କେଶ୍ୱରଙ୍କ ଇଚ୍ଛା ନା' ତୋର ଇଚ୍ଛାରେ ? (ମାରିଛି)

ରାମ—ଶଳା ବାବାଜୀ ହୋଇଛୁ କାହିଁକି ବେ ? (ମାରିଛି)

ବୈରାଗୀ– ଓହୋଃ, ଓଃ··· ମୋତେ ରଗାଅନା' ରାମଶ୍ୟାମ– ଭଲରେ କହୁଛି– ମୋ'ତେ ଛାଡ଼ିଦିଅ । ବ୍ରହ୍ମ ଅଭିଶାପ ଦେବି ଯଦି··· ପଥର ହୋଇ ଯିବ··· ପଥର···

ରାମ—ଶଳା ଡ଼ରାଉଛୁ ଆମକୁ ? ଦେ' ଶଳା ବ୍ରହ୍ମ ଅଭିଶାପ ଦେ··· (ମାରିଛି)

ଶ୍ୟାମ—ତୁ ଶଳା କେମିତିକା ବ୍ରହ୍ମଜ୍ଞାନୀ, ଆମେ ଠିକ୍ ଜାଣିଛୁ··· (ମାରିଛି)

ବୈରାଗୀ—ଓଃ ହୋ.... ତୁମେ ମୋତେ ଅଯଥାରେ ଦଣ୍ଡ ଦେଉଛ ରାମ ଶ୍ୟାମ– ତ୍ରିନେତ୍ର ଖୋଲି ଚାହିଁଦେବି ଯଦି– ଜଳିପୋଡ଼ି ପାଉଁଶ ହୋଇଯିବ··· ଭଲରେ କହୁଛି– ମୋତେ ଛାଡ଼ିଦିଅ...

ରାମ—ଛାଡ଼ିଦେବୁ କେମିତି ? ତୁ ପରା ଆମ ଭଉଣୀକୁ ମାତାଜୀ କରିନେବୁ ?

ବୈରାଗୀ—ତା'ବୋଲି, ତୁମେ ମୋତେ ଏତେ ଦଣ୍ଡ ଦେବ ?

ଶ୍ୟାମ—ଦଣ୍ଡ ଦେଲୁଣି କଣ ? ଆଜି ତୋ ବାବାଜୀ ଗିରି ଛଡାଇ ଦେବୁ....

ବୈରାଗୀ—ଏମିତି କରନା ବାବା ! ପାପ ଭାରରେ ପୃଥିବୀ ରସାତଳକୁ ଗ୍ଲଲିଯିବ...

ରାମ—ଧର ଶ୍ୟାମ ! ଶଳା ପାପୀକୁ ପ୍ରାୟଶ୍ଚିତ କରେଇ ଦେବା···

ଶ୍ୟାମ—କରେଇବା... (ବୈରାଗୀ ପ୍ରତି) ଗ୍ଲଲ ଶଳା– ଗଙ୍ଗା ସ୍ନାନ କରିବୁ ଗ୍ଲଲ··· (ମାନସୀ ଆସି ସ୍ତମ୍ଭିତ ମୁହଁରେ ରହି ଦେଖୁଛି) (ରାମ ଶ୍ୟାମ ଦୁହେଁ ବୈରାଗୀକୁ ଧରି ଗ୍ଲଲି

ଯାଉଥିବାବେଳେ, ବୈରାଗୀ ଅଟକି ପ୍ରଶ୍ନ କରିଛି ।)

ବୈରାଗୀ—ବୁଢ଼ ବାବା ! ଜଙ୍ଗଲଟା ଏପଟେ ନୁହେଁ– ସେ ପଟେ···

ରାମ—ଭଣ୍ଡାରୀ ସେଲୁନଟା ସେପଟେ ନୁହେଁ– ଏପଟେ....

ବୈରାଗୀ—ଭଣ୍ଡାରୀ ସେଲୁନକୁ କାହିଁକି ନେଉଛ ବାବା ?

ଶ୍ୟାମ—ଲଣ୍ଡା ହେବୁ– ଲଣ୍ଡା....

ବୈରାଗୀ—ଆଁ··· ଲଣ୍ଡା··· ହେବି ?

ରାମ—ତୁ ପରା ଆମ ଭଉଣୀକୁ ବାହାହେବୁ ?

ବୈରାଗୀ—ତୁମ ଭଉଣୀକୁ ମୋତେ ଦେବତ ?

ଶ୍ୟାମ—ତତେ ନଦେଇ, ଆଉ କାହାକୁ ଦେବୁ ?(ମାରିଛି)

ରାମ—ଘୁଇ ଶଳା··· (ମାରିଛି)

ବୈରାଗୀ–ଜୟ ଶିବ ଶଙ୍କର–ଜୟ ଶିବ ଶଙ୍କର...

(ରାମ ଶ୍ୟାମ ଦୁହେଁ ବୈରାଗୀକୁ ଟାଣିଟାଣି ନେଉଯାଉଛନ୍ତି)

ମାନସୀ—(ତାଙ୍କ ବାଟକୁ ଚାହିଁ ହସି ଉଠିଛି ) ଦୁନିଆରେ ପୁଣି ଏମିତି ବାବା ଅଛନ୍ତି । ମାଡ ଖାଇବାକୁ କେତେବେଳୁ ଅପେକ୍ଷାକରି ବସିଛି···

କୁବେର—(ପ୍ରବେଶି) କଣ ହେଲା ମାନା ! ଏମିତି ହସୁଛୁ ?

ମାନସୀ—ବାବା ଲଙ୍କେଶ୍ୱରଙ୍କ ଭକ୍ତକୁ, ରାମଭାଇ ଶ୍ୟାମଭାଇ ଭଣ୍ଡାରୀ ସେଲୁନକୁ ନେଇଗଲେ ।

କୁବେର—କାହିଁକି ?

ମାନସୀ—ସେ ମୋତେ ମାତାଜୀ କରିନେବାକୁ ଆସିଥିଲା ।

କୁବେର—ଏ ରାମ ଶ୍ୟାମ ଯୋଗୁଁ, ମୁଁ ଏଠି ରହିପାରିବିନି ।

ମାନସୀ–ତୁମେ ଭାଇମାନଙ୍କୁ ଭୁଲ ବୁଝନା ବାପା– ଆମେ ଗରିବ,

ଅସହାୟ, ରାଷ୍ଟ୍ରାନ୍ତର ମଣିଷ ବୋଲି ଆମର କ'ଣ ଇଜ୍ଜତ ନାହିଁ ?

କୁବେର—ମାନସୀ !!! ଏହା ଭିତରେ ତୁ ପ୍ରତିବାଦ କରି ଶିଖିଲୁଣି ?

ମାନସୀ—ତମେ ଅନ୍ୟାୟ, ଅତ୍ୟାଚାର ସହିସହି ପଥର ହୋଇ ଯାଇଛ ବାପା- କିନ୍ତୁ ଆମେ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ ନ କଲେ, ଏ ଯୁଗରେ ବଞ୍ଚି ପାରିବୁନି··· (ପ୍ରସ୍ଥାନ)

କୁବେର—ମୁଁ ଜାଣି ପାରୁଛି– ଏ ସବୁ ମଧୁବାବୁର ଶିକ୍ଷା··· ଆରେ ସେ କଣ ସବୁ ଦିନ ତୁମ ପିଠିରେ ପଡ଼ିବେ, ଯଉ, ତୁମ ଇଚ୍ଛା ଯାହା କରୁଛ– କର··· (ଆସି ନିଜ ସ୍ଥାନରେ ମୁଣ୍ଡରେ ହାତଦେଇ ବସିଛି)

(ବାହାରେ କାର ପାର୍କିଂର ଶବ୍ଦ ଶୁଣା ଯାଉଛି । ଶେଠ କିଷନଲାଲ ରେଡ଼ିହୋଇ ଆସିଛି ମାନସୀଙ୍କୁ ସର୍କିଟ ହାଉସକୁ ନେବାପାଇଁ )

କିଷନ- (ପ୍ରବେଶି) ସୀତାରାମ- ସୀତାରାମ··· କ୍ୟାହୁଆ କୁବେର ବୁଢ଼ା ? ଲଡକୀ ତେରୀ ରେଡ଼ି ହୈ କି ନେହି ? ଆଜ ଇଣ୍ଡଷ୍ଟ୍ରି ମିନିଷ୍ଟର ସର୍କିଟ ହାଉସ ମେଁ ରହେଙ୍ଗେ । ମେରୀ ଲଡ଼କୀକା ଇଣ୍ଟରଭିଉ ଲେଙ୍ଗେ ! କାଲ ସବେରେ, ମେରେକୁ ମିଲଯାଏଗା ଫ୍ୟାକ୍ଟ୍ରି ଲାଇସେନ୍ସ- ଔର ତେରୀ ଲଡ୍‌କୀକୁ ନୌକରୀ...

କୁବେର—ନାହିଁ ସେଠଜୀ ! ଆଜି ମୋ ଝିଅ ଯାଇ ପାରିବନି ।

କିଷନ—ଆରେ ହୁଆକ୍ୟା ? ହମାରା ତୋ' ବହୁତ୍ ଲୁକ୍‌ସାନ ହୋ' ଯାଏ ଗା'······ ମନ୍ତ୍ରୀ ମେରେ ପର ଗୁସ୍ସା ହୋଙ୍ଗେ । ରୁପିୟା ଜରୁରତ୍ ହୈ ତୋ- ଲେ ଲୋ ଏକ ହଜାର ରୁପୟା ଆଡ୍‌ଭାନ୍ସ । (ନୋଟ୍ ଫିଙ୍ଗିଦି ।) ଅଭି ଭେଜ୍‌ଦୋ' ତେରୀ ଲଡ଼କୀକୁ···

କୁବେର—ଆଡ୍‌ଭାନ୍ସ ମୋର ଦରକାର ନାହିଁ ଶେଠଜୀ··· ଆପଣ ଟଙ୍କା

ନେଇ ଯାନ୍ତୁ··· (ଟଙ୍କା ଫେରସ୍ତ ଦେବାକୁ ଉଠି ଆସିଛି ।)

କିଷନ—ଆରେ ରଖଲେ– ରଖଲେ···(କୁବେର ପକେଟରେ ଜବରଦସ୍ତ ରଖି) କାଇ ସୁବେ ଫିର ଏକ ଶୌ' ରୁପିୟା ଦେଙ୍ଗେ ।

ମଧୁ—(ପ୍ରବେଶି)ଯନ୍ତ୍ରବାପର କାରବାର କଣ ମଉସା ?

କୁବେର—ମାନୀ ଘକିରୀ କରିବ ବୋଲି ସେଠଜୀ ଏ ଶଏ ଟଙ୍କା ମୋତେ ଦେଉଛନ୍ତି । (ପକେଟରୁ ଟଙ୍କା କାଢ଼ି ଧରିଛି)

ମଧୁ—ମାନୀ ଘକିରୀ କରିବନି । (କୁବେର ହାତରୁ ଟଙ୍କା ଛଡ଼ାଇ ଆଣି ରାଗରେ କିଷନ ଉପରକୁ ଫିଙ୍ଗି) ଗୁଲିଯାନ୍ତୁ ଆପଣ···

କିଷନ—(ଟଙ୍କା ଉଠାଇ) ଆପ୍ ବୋଲ୍‌ନେ ବାଲା କୌନ୍ ହେଁ ?

ମଧୁ—ହାରାମ କାଦା ! ଜାଣିନୁ ମୁଁ କିଏ ? (କିଷନ କଲରଧରି) ମଣ୍ଡୀକୁ ଭେଟି ଦେବା ପାଇଁ, ମାନସୀକୁ ହର୍କିଟ ହାଉସ ନେବାକୁ ଆସିଛୁ ନା··· ?

କିଷନ—ଝୁଟା ବାତ୍– ଛୋଡ ଦୋ' ମୁଝେ···

ମଧୁ—ଝୁଟାବାତ୍ ନା ? (ମାରିଛି ମୁଥି ତା' ପେଟକୁ)

କିଷନ—ଅଃ, ଅଃ··· ଅଃ...

ମଧୁ—ଶଳା ଲଜା ବଜାରୀ··· ତୋ ଝିଅକୁ ନେଇ ମନ୍ତ୍ରୀକୁ ଭେଟି ଦେଉନୁ– ଲଇଦୀ ଲାଇସେନ୍‌ସ ପାଇଯିବୁ···

କିଷନ—ହେଇଟି, ମେରୀ ବେଟୀର ନାମ ଲେକୁତ.... (ଲଢ଼ିବାକୁ ହାତ କଷିଛି)

ମଧୁ—(ପୁନଶ୍ଚ ତା' କଲରଧରି) ହାରାମ କାଦା··· ତୁ କଣ ଭାବୁଛୁ ଏକା ତୋ' ଝିଅର ମାନ୍ ଇଜ୍ଜତ ଅଛି– ରାସ୍ତାକଡ଼ରେ ବାସ କରୁଥିବା ଗରିବ ଝିଅ ମାନଙ୍କର ମାନ ଇଜ୍ଜତ କିଛି ନାହିଁ ? (ପୁଣି ମୁଥି ମାରିଛି ତା' ମୁହଁ ଓ ପେଟକୁ)

କିଷନ—(ଯନ୍ତ୍ରଣାରେ) ଆଃ, ଓଃ, ଆଃ··· ପୋଲିସ, ପୋଲିସ

କୁବେର—ଛାଡ଼ିଦିଅ, ଛାଡ଼ିଦିଅ ମଧୁବାବୁ ! ସେଠଜୀଙ୍କୁ ଛାଡ଼ିଦିଅ– ସେ ଆଉ ଏଠିକି ଆସିବେନି···

ମଧୁ—ତୁମେ ଚୁପ୍ରହ ମଉସା– ମୁଁ ଏ ସଇତାନ ବଳଦକୁ ଠିକ୍ ଜାଣିଛି । ତୁମେ ବୁଝି ପାରିବନି ଏ ମାୟାବୀର ଷଡ଼ଯନ୍ତ୍ର···

କିଷନ—ଠିକ୍‌ହେ ବେଟା– ଏ ଗୁଣ୍ଡାମୀ ନେହିଁ ଚଲେଗା । ଯାଦରଖ୍...
ମେରା ନାମ ସେଠ କିଷନ୍ ଭାଇ···

ମଧୁ—ଯା'ବେ ଶଳା ! କେତେ ଫୁଟାଣୀ ମାରୁଛୁ···
(ଭୟରେ କିଷନ ଦୌଡ଼ି ପଳାଇଛି । ରାଗରେ ମଧୁ ତା' ବାଟକୁ ଗୁହିଁ ରହିଛି ।)

କୁବେର—(ମଧୁପ୍ରତି) ଭଲ ହେଲାନି ବାବା– କହିପାରି ସେଠଜୀ କୁ ବିଦା କରିଦେଇଥିଲେ କ'ଣ ଚଳି ନଥାନ୍ତା ? ରାମଣାମ ପରି ତୁମେ ବି ମୂର୍ଖ କାମ କରୁଛ ?

ମଧୁ—ତୁମେ ଏ ଜନ୍ମରେ ମଧ୍ୟ ବୁଢ଼ା ହେଲଣି ମଉସା– ଏ ବେଇମାନ ଦୁନିଆର ଛଳନା, ପ୍ରତାରଣା, କୂଟ କପଟ କିଛି ବୁଝି ପାରୁନ ? ତୁମେ ପରା ପୂର୍ବ ଜନ୍ମରେ ବାପୁଜୀଙ୍କ ଚେଲା ଥିଲ ? ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରୁଥିଲ ?

କୁବେର—ମଧୁବାବୁ···

ମଧୁ—ମୋତେ ଭୁଲ ବୁଝିବନି ମଉସା– ଆଇନର ସହାୟତା ପାଇଁ ମୁଁ ଥାନାକୁ ଯାଇଥିଲି । ଥାନାବାବୁ ମୋର ଡାଇରୀ ନନେଇ ମୋତେ ଖେରଙ୍କ ସର୍ଦ୍ଦାର କହି ହାଉସ କଲା । ସେଇ ରାଗରେ ମୁଁ ଆଇନକୁ ହାତକୁ ନେବାକୁ ବାଧ୍ୟ ହେଲି···

ମାନସୀ—(ଝୁମ୍ପୁଡ଼ି ଭିତରୁ ଆସି ସେମାନଙ୍କ କଥା ଶୁଣିଛି )

କୁବେର—ସେମାନେ ବଡ଼ଲୋକ ମଧୁବାବୁ··· ସେମାନଙ୍କ ହାତରେ ଧନ ଅଛି, କ୍ଷମତା ଅଛି, ଶାସନ କଳ ଅଛି । ସେମାନଙ୍କ ସହିତ ସମ୍ମୁଖ ଲଢ଼େଇ ନକରି, ମୁଁ ଭାବୁଛି ବାପୁଜୀଙ୍କ ଅହିଂସା ମନ୍ତ୍ରରେ ସେମାନଙ୍କୁ···

ମଧୁ—ଯୁଗ ବଦଳି ଯାଇଛି ମଉସା ! ଏ ଯୁଗରେ ଚାଣକ୍ୟ ନୀତି ଦରକାର ପଡୁଛି । ଦୁଷ୍ଟ ଦଳନ ପାଇଁ ଭଗବାନ ଆଉ ଜନ୍ମ ହେବେନି ମଉସା- ଅନ୍ୟାୟ, ଅତ୍ୟାଚାର ଅଧର୍ମ ବିରୁଦ୍ଧରେ ଆମକୁହିଁ ଲଢେଇ କରିବାକୁ ପଡ଼ିବ ।

କୁବେର—ସେଥିପାଇଁ ପ୍ରସ୍ତୁତି ଦରକାର ମଧୁବାବୁ ! ସେଥିପାଇଁ ବାପୁଜୀଙ୍କ ପରି ନେତା ଦରକାର । ମୁଁ ମନା କରୁଛି- କିଛି ଚିନ୍ତାନକରି- ନାଗସାପ ଗୁଡ଼ାକ ଲାଞ୍ଜରେ ହାତ ମାରିଦେଲ ବାବୁ··· ଏଇନେ ପୋଲିସ ଆସି ଆମ ଝୁମ୍ପୁଡ଼ି ଖଣ୍ଡକ ଭାଙ୍ଗିଦେବ— ଆମ ସମସ୍ତଙ୍କୁ ନେଇ ଜେଲରେ ଭର୍ତ୍ତି କରିଦେବ ।

ମଧୁ—ପୋଲିସକୁ ଫେସ୍ କରିବାକୁ, ମୁଁ ଏଇଠି ଏକୁଟିଆ ରହୁଛି ମଉସା··· ତୁମେ ମାନସୀକୁ ନେଇ ଚାଲିଯାଅ···

କୁବେର—ନାଁ, ବାବା ! ମୁଁ ଏଠି ରହୁଛି- ତୁମେ ମାନସୀକୁ ନେଇ ଚାଲିଯାଅ···

ରାମ—(ପ୍ରବେଶ) ନାଁ ବାପା ! ତୁମେ ତିନିଜଣଯାକ ଚାଲିଯାଅ— ଆମେ ରାମଶ୍ୟାମ ଦୁହେଁ ଏଇଠି ରହି ପୋଲିସ ସହିତ ଲଢେଇ କରିବୁ ।

କୁବେର—ଆରେ ତୁମକୁ ଯମ ମୁହଁକୁ ଠେଲିଦେଇ ମୁଁ ଚାଲିଯିବି ?

ଶ୍ୟାମ—(ପ୍ରବେଶ) ରାମଭାଇ ଠିକ୍ କହୁଛି ବାପା ! ତୁମେ ସବୁ ଚାଲିଯାଅ.... ଆମେ ଦୁହେଁ ଜେଲ ଯିବାକୁ ପ୍ରସ୍ତୁତ ଅଛୁ ।

କୁବେର—ଆରେ ତୁମେ ଦୁହେଁ ଜେଲକୁ ଚାଲିଗଲେ- ଏ ଆନ୍ଦୋଳନ ଚାଲିବ କେମିତି ? ଲଢେଇ ଯେ'— ଆରମ୍ଭ ହୋଇ ଗଲାଣି ।

ତୁମେ ସବୁ ସଂଗ୍ରାମୀ ଜବାନମାନେ ଏଠୁ ଫେରାଣ ହୋଇ-
ଯାଅ । ମୁଁ ଓ ମାନୀ- ଆମେ ଏଇଠି ରହୁଛୁ···

ଶ୍ୟାମ—ବାପା ଠିକ୍ କହୁଛନ୍ତି ରାମଭାଇ···

ରାମ—ବାପା ଏରେଷ୍ଟ ହୋଇଗଲେ- ମାନୀ ଏକୁଟିଆ ଏଠି କେମିତି
ରହିବ ?

ମଧୁ—ମାନୀ ପାଇଁ ତୁମେ ଚିନ୍ତା କରନା- ତାର ବ୍ୟବସ୍ଥା ମୁଁ
କରିବି···

କୁବେର—ତୁମେ ଏମିତି ବିଲୁଆ ଚିତ୍କାର କରୁଥାଅ ପୋଲିସ ଆସିଯିବ ।
ସମସ୍ତଙ୍କୁ ନେଇ ଜେଲରେ ପୁରାଇ ଦେବ ।

ମଧୁ— ଯିବା ପୂର୍ବରୁ, ରାସ୍ତା କଡର ସବୁ ମଣିଷଙ୍କୁ ଏକଜୁଟ ପାଇଁ
ଚେତେଇ ଦେବା ଉଚିତ୍ ।

ରାମଶ୍ୟାମ—ହଁ ହଁ, ଠିକ୍ କଥା···

(ରାମ, ଶ୍ୟାମ, ମଧୁ ଓ ମାନସୀ ନାଟକୀୟ ଭଙ୍ଗୀରେ
ଚାରିକୋଣକୁ ଚାରି ଦିଗକୁ ଦୌଡ଼ିଯାଇ ଡାକ ଛାଡ଼ିଛନ୍ତି)

ରାମ—(ସାମନାପଟ ବାମରେ ରହି) ଝୁମ୍ପୁଡ଼ିବାସୀ ଘର ଭଉଣୀମାନେ
ଏକଜୁଟ ହୁଅ···

ମାନସୀ—(ସାମନାପଟ ଡାହାଣରେ ରହି) ମା' ମାଉସୀମାନେ । ଏକ-
ଜୁଟ ହୁଅ-

ଶ୍ୟାମ—(ପଛପଟ ବାମରେ ରହି ) ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ
ପ୍ରତିବାଦ କର-

ମଧୁ—(ପଛପଟ ଡାହାଣରେ ରହି) ଇଟାର ଜବାବ, ପଥରରେ ଦିଅ...
(ଗୋଇଠି ଚେଞ୍ଜକରି, ରାମ, ଶ୍ୟାମ, ମଧୁ ଓ ମାନସୀ ପୁନଶ୍ଚ
ଉପରୋକ୍ତ ସ୍ଲୋଗାନ ଦେଉଛନ୍ତି । )

କୁବେର—(ମଞ୍ଚରେ ରହି) ବନ୍ଧୁଗଣ ! ଆମର ଅସହଯୋଗ ଆନ୍ଦୋଳନରେ ସମସ୍ତେ ସାମିଲ ହୁଅ···

ସମସ୍ତେ—ବାସହୀନ ଗରିବ ମଉସା ମାଉସୀମାନେ- ଭାଇ ଭଉଣୀମାନେ ଏକଜୁଟ ହୁଅ···  (ଏକଜୁଟ ହେବାର କମ୍ପୋଜିସନ କରି) ଏ ମାଟିରେ ଆମରବି' ବଞ୍ଚିବାର ଅଧିକାର ଅଛି । ଆମରବି' ମାନ ଇଜ୍ଜତ ଅଛି··· (ଦୂରରୁ ପୋଲିସ ଗାଡ଼ିର ସାଇରନ୍ ଶୁଭିଛି । କୁବେର ଦୂରକୁ ଚାହିଁ, ସମସ୍ତଙ୍କୁ ସତର୍କ କରାଇ ଦେଇଛି ।)

କୁବେର—ପୋଲିସ ଆସିଗଲା ବାବାମାନେ ! ପଳେଇଯାଅ- ପଳାଇ ଯାଅ··· ଯାଅ··· ପଳାଇଯାଅ···

(ରାମ, ଶ୍ୟାମ, ମଧୁ ବିଭିନ୍ନ ଦିଗକୁ ଦୌଡ଼ି ପଳାଇଛନ୍ତି । ମାନସୀ ଝୁମ୍ପୁଡ଼ି ଭିତରକୁ ଚାଲି ଯାଇଛି । କୁବେର ନିଜ ଦୋକାନ ପାଖରେ ଶୋଇଯାଇଛି । କିଛି ସମୟ ପରେ ଇନ୍‌ସପେକ୍ଟର ମର୍ଦ୍ଦରାଜ ଓ ସିପାହୀ ହରିମହାନ୍ତି ପ୍ରବେଶି-ଛନ୍ତି ।)

ମର୍ଦ୍ଦରାଜ—କୁଆଡେ ଗଲେ କ୍ରିମିନାଲ ଗୁଡାକ···

ହରି—ଏଇଠି ଥିଲେ ସାର··· (ଚାରିଆଡ଼େ ବୁଲି ଖୋଜିଛନ୍ତି)

ମର୍ଦ୍ଦରାଜ—କାହିଁ, କେହିତ ଦିଶୁ ନାହାନ୍ତି- (ଝୁମ୍ପୁଡ଼ିକୁ ଚାହିଁଛି)

ହରି—(କୁବେରକୁ ଦେଖି) ନମ୍ବର ଓ୍ୱାନ କ୍ରିମିନାଲ, ଉଗ୍ରପନ୍ଥୀ, ନକ୍ସଲପନ୍ଥୀ ଏଇଠି ଶୋଇଛି ସାର···

ମର୍ଦ୍ଦରାଜ—(କୁବେରପ୍ରତି) ଏ ବୁଢା ! ଉଠ୍-ଉଠ୍-ଉଠ୍···

କୁବେର—ଓଃ, ଓଃ, (ଉଠି) ନମସ୍କାର ବାବୁ····

ମର୍ଦ୍ଦରାଜ—ରାମ, ଶ୍ୟାମ, ମଧୁ ଗଲେ କୁଆଡେ ?

କୁବେର—କୁଆଡ଼େ ଗଲେ ମୁଁ ଜାଣିନି ସାର···

ମର୍ଦ୍ଦରାଜ—ନେତା ନଟବର, ସେଠ କିଷନଲାଲଙ୍କୁ ବାଡ଼େଇ ତୁମେ ସବୁ ଟଙ୍କା ସୁନା ଲୁଟି ନେଇଛ ନା ?

କୁବେର—ମିଛକଥା ବାବୁ- ଏ ସବୁ ମିଛ କଥା···

ମର୍ଦ୍ଦରାଜ—ମୋ ସିପାହୀ ହରି ମହାନ୍ତିକୁ- ଆଉ ବୈରାଗୀ ବାବାକୁ ବାଡ଼େଇଛି କିଏ···

କୁବେର—ମୁଁ କିଛି ଜାଣେନି ଇନ୍‌ସପେକ୍ଟର ବାବୁ- ମୁଁ କିଛି ଜାଣେନି...

ହରି—ଶଳା ବୁଢ଼ା ପକା ସଇତାନ ଅଛି ସାର- ପିଠିରେ ପାହାର ନବାଜିଲେ ସାର ! କିଛି କହିବନି···

କୁବେର—ସେମିତି କହନ୍ତୁନି ସିପେଇ ବାବୁ···

ମର୍ଦ୍ଦରାଜ—(ରାଗି) ଶଳା ରାଗି ଉଠୁନୁ କଣ ? (ଟାଣିନେଇ ବାଡ଼େଇଛନ୍ତି) ଚାଲ ଶଳା- ଥାନାକୁ ଚାଲ- ଥାନାକୁ ଚାଲ··· ଚାଲ···

କୁବେର—ଓଃ ମୋତେ ପିଟନ୍ତୁନି ସାର- ମରିଯିବି ସାର- ମରିଯିବି···

ମର୍ଦ୍ଦରାଜ—ତୁମେ ସବୁ ଶଳା ଉଗ୍ରପନ୍ଥୀ, ନକ୍ସଲପନ୍ଥୀ, କ୍ରିମିନାଲ ଦଳ ମରିଯିବା ଉଚିତ୍ । ମହାନ୍ତିଏ... ଲଗାଅ ଶଳାକୁ ହାତକଡ଼ି...

ହରି—ୟେସ ସାର··· ( ଦୌଡ଼ିଯାଇ କୁବେର ହାତରେ ହାତକଡ଼ି ପିନ୍ଧାଇଛି ) ଶଳା ବୁଢ଼ା ! ତତେ ମୁଁ ଦେଖିବି··· ଚାଲ ଥାନାକୁ··· (ବାଡ଼େଇଛି)

ମାନସୀ—(ଭିତରୁ ଆସି ମର୍ଦ୍ଦରାଜ ପ୍ରତି) ପ୍ଲିଜ ବାବୁ ! ପୋଲିସ ବାବୁ··· ମୋ ବାପାକୁ ଛାଡ଼ିଦିଅ ପୋଲିସବାବୁ... (କାନ୍ଦି) ମୁଁ ତୁମ ଗୋଡ଼ତଳେ ପଡୁଛି- ମୋ ବାପାକୁ ଛାଡ଼ି ଦିଅ···

ମର୍ଦ୍ଦରାଜ—ନାଁ, ମୁଁ କିଛି ଶୁଣିବିନି । (ହରିପ୍ରତି) କ୍ରିମିନାଲକୁ ଭ୍ୟାନ ପାଖକୁ ନେଇ ଆସ ମହାନ୍ତିଏ.... (ପ୍ରସ୍ଥାନ)

ହରି—ୟେସ ସାର··· (କୁବେରକୁ ବାଡ଼େଇ) ଚାଲ ଶଳା···

ମାନସୀ—ମୋ ବାପାଙ୍କୁ ଛାଡ଼ିଦିଅ ସିପେଇ ବାବୁ– ଛାଡ଼ିଦିଅ–

(ହରି ମହାନ୍ତିର ଗୋଡ଼ ଧରିଛି ।

ହରି—ଛାଡ଼ି ଦେବିନା ? ମୁଁ ଯେତେବେଳେ ମାଡଖାଉଥିଲି, ତୁ ସେତେବେଳେ କୋଉଠି ଥିଲୁ ଲୋ ଟୁଣ୍ଡୀ ? ଛାଡ଼ ମୋତେ...

(ମାନସୀକୁ ଠେଲି ପକାଇ ଦେଉଛି)

ମାନସୀ—(ବିକଳରେ) ମୋ ବାପାଙ୍କୁ ଛାଡ଼ିଦିଅ ସିପାହୀବାବୁ– ଛାଡ଼ିଦିଅ– ଛାଡ଼ିଦିଅ... (କାନ୍ଦୁଛି)

ହରି—(କୁବେରଙ୍କୁ ବାଡ଼େଇ) ଗୁଣ୍ଡା ! ଚାଲ...

କୁବେର—(ମାନସୀ ପ୍ରତି) ମୁଁ ଯାଉଛି ମାନୀ... (କାନ୍ଦିକରି) ତୋର ଭରସା ଭଗବାନ– ଭଗବାନ.... (କାନ୍ଦି କାନ୍ଦି ଚାଲି ଯାଉଛି)

ମାନସୀ—(ବିକଳରେ ଡାକିଛି) ବାପା...

ହରି—ବାପା ନା ଶେପା ? ରହ ଟୋକି– ମୁଁ ପୁଣି ଆସୁଛି– (ପ୍ରସ୍ଥାନ)

ମାନସୀ—(ହରିଙ୍କୁ ଅନୁରୋଧକରି) ମୋ ବାପାଙ୍କୁ ଛାଡ଼ିଦିଅ ପୋଲିସବାବୁ... ମୋ ବାପାଙ୍କୁ ଛାଡ଼ିଦିଅ– ମୋ ବାପାଙ୍କୁ ଛାଡ଼ିଦିଅ...

(ଅଟକି କାନ୍ଦୁଛି । ଶୁଣାଯାଉଛି ପୋଲିସ ଭ୍ୟାନ ଛାଡ଼ିବାର ଶବ୍ଦ । ଉଠିପଡ଼ି, ମାନସୀ ସହରବାସୀଙ୍କୁ ଡାକପକାଉଛି । )

ମାନସୀ—ହେ ବାବୁ ସାହେବମାନେ.... ମଉସା ମାଉସୀମାନେ– ଭାଇ ଭଉଣୀମାନେ... କିଏ କୋଉଠି ଅଛ– ଦୌଡ଼ି ଆସ–ଦୌଡ଼ି ଆସ... ମୋ ବାପାଙ୍କୁ ବିନା ଦୋଷରେ ପୋଲିସ ବାନ୍ଧି ନେଉଛି– ତାଙ୍କୁ ଉଦ୍ଧାର କର– ରକ୍ଷାକର... ଦୌଡ଼ିଆସ... (କେହି ନଆସିବାରୁ) ଏତେବଡ ସହରରେ କେହି ଜଣ ମୋ' ଡାକ ଶୁଣି ପାରୁ ନାହାନ୍ତି ? ସମସ୍ତେ କଣ ମୂକ, ବଧୀର ? ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରିବାକୁ– କାହାରି କଣ ସାହସ ନାହିଁ ? ( ପୁଣି କାନ୍ଦିକାନ୍ଦି ଡାକିଛି । ) ହେ ଧର୍ମାବତାର ନ୍ୟାୟପତିମାନେ– ମନ୍ତ୍ରୀ, ଏମେଲେମାନେ,

ବଡ଼ିଲ ବାଗିଷ୍ଟରମାନେ- ଗରିବ ଗୁହାରୀ କେଣ କେହି ଶୁଣିବ ନାହିଁ- କେହି ଶୁଣିବ ନାହିଁ- କେହି ଶୁଣିବ ନାହିଁ···
(କାନ୍ଦି କାନ୍ଦି ଭୂଇଁରେ ଅଣ୍ଡେଇ ପଡ଼ି ଜନତାଙ୍କୁ ପ୍ରଣାମକରିଛି)

(ମଦନିଶାରେ, ପୂର୍ବ କଳ୍ପିତ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ, ଘରିଙ୍ଗଗଣ୍ଡ ମାଡ଼ି ଆସିଛନ୍ତି- ହରି ମହାନ୍ତି, କିଷନଭାଇ ନେତା ନଟବର ଓ ବାବାଜୀ ବୈରାଗୀ ଦାସ । ସେମାନେ ତାକୁ ଘେରାଉ କରି କହିଛନ୍ତି ।)

ସମସ୍ତେ—ଶୁଣିବୁ, ଶୁଣିବୁ- ଆମେ ତୋ' ଗୁହାରୀ ଶୁଣିବୁ···

ମାନସୀ—(ଭୟରେ ଉଠି ସେମାନଙ୍କୁ ମାତାଲ ଅବସ୍ଥାରେ ଦେଖି) ଆପଣମାନେ ? ଆପଣମାନେ ?? ଗୁଚ୍ଛିଯାନ୍ତୁ··· ଆପଣମାନେ ଏଠୁଁ ଗୁଚ୍ଛିଯାନ୍ତୁ···

ସମସ୍ତେ—ଆମେ ପରା ତୋ' ଗୁହାରୀ ଶୁଣିବୁ···

ମାନସୀ—ନା, ଆପଣମାନେ କାହାରି ଗୁହାରୀ ଶୁଣନ୍ତି ନାହିଁ । ଆପଣ ମାନେ ମଣିଷ ନୁହନ୍ତି- ଜାନୁଆର··· ସଇତାନ···

ସମସ୍ତେ—(ହସି) ଆମେ କୁଆଡ଼େ ସଇତାନ ...

ମାନସୀ—ଆପଣମାନଙ୍କ ନିଶ୍ୱାସରେ କାଳକୂଟ ବିଷ- ହୃଦରେ ଅଣବିକ ବୋମାର ବିସ୍ଫୋରଣ । ଆପଣମାନେ- ଆପଣମାନେ ହବୁ ନାରୀ ମାଂସ ଲୋଭୀ ଅଲଣ୍ଡାଣିଆ କୁକୁର···

ସମସ୍ତେ—ହଁ ଆମେ କୁକୁର- ତାହାର କୁକୁର....

(ନିଜ ନିଜ ସ୍ଥାନରେ କୁକୁରପରି ବସି ଭୁକିଛନ୍ତି)

ମାନସୀ—(ଭୟରେ ଥରି) ବାବୁ ସାହେବମାନେ- ବାପା ଭାଇମାନେ- କିଏ କୋଉଠି ଅଛ, ଦୌଡ଼ି ଆସ··· ସଇତାନଙ୍କ କବଳରୁ ଆମାତେ ରକ୍ଷାକର- ମୋତେ ବଞ୍ଚାଅ- ମୋତେ ବଞ୍ଚାଅ···
(କାନ୍ଦି କାନ୍ଦି) ମୋତେ ବଞ୍ଚାଅ....

ସମସ୍ତେ—(କୁକୁରପରି ଭୁକି ଚତୁର୍ଦ୍ଦିଗରୁ ଆସନ୍ତି, ଆସନ୍ତି ମାନସୀକୁ ଆକ୍ରମଣ କରିବାକୁ ଯାଉଁ ଯାଉଁ, କାମାନ୍ଧ କୁକୁରଙ୍କ ପରି ନିଜନିଜ ଭିତରେ ଝଗଡ଼ାଲାଗି, କାମୁଡ଼ା କାମୁଡ଼ି ହୋଉଛନ୍ତି)

ମାନସୀ—କୁକୁର ଗୁଡ଼ାଙ୍କ କବଳରୁ ମୋତେ ବଞ୍ଚାଅ ବାବୁ ବାହେବ ମାନେ ! ମା' ମାଉସୀମାନେ– ମୋତେ ବଞ୍ଚାଅ···

ସମସ୍ତେ—(ଚତୁର୍ଦ୍ଦିଗରୁ କୁକୁରପରି କାମୁଡ଼ା କାମୁଡ଼ି ହୋଇ, ଭୁକିଭୁକି ଦୌଡ଼ି ଆସି, ମାନସୀକୁ ଆକ୍ରମଣ କରିଛନ୍ତି । )

ମାନସୀ—(କୁକୁରଙ୍କ ଦନ୍ତ ଓ ନଖ ଆଘାତରେ କ୍ଷତ ବିକ୍ଷତ ହୋଇ) ଓଃ··· ଆଃ··· ଆଃ··· (ଦୌଡ଼ିଯାଇ ବାପୁଜୀଙ୍କ ପ୍ରତିମୂର୍ତ୍ତିର ଗୋଡ଼କୁ କାବୁଡ଼ିଧରି) ମୋତେ ବଞ୍ଚାଅ ବାପୁଜୀ ! ମୋତେ ବଞ୍ଚାଅ··· ବଞ୍ଚାଅ··· ନାରୀ ମାଂସ ଲୋଭୀ କୁକୁରମାନଙ୍କ କବଳରୁ ମୋତେ ବଞ୍ଚାଅ— (କାନ୍ଦିଛି)

ସମସ୍ତେ—(ନୃଶଂସ ଭାବରେ ଭୁକିଭୁକି ମାନସୀ ଉପରକୁ କୁଦି ପଡ଼ିଛନ୍ତି । ଝୁଣି ଖାଇ ଯାଉଛନ୍ତି ତାର ରକ୍ତ ମାଂସକୁ)

ମାନସୀ—(ଛଟପଟ ହୋଇ) ଓଃ, ଓଃ··· ଆଃ··· ଆଃ··· ଆଃ··· (ଯନ୍ତ୍ରଣାରେ ମାନସୀ ଛଟପଟ ହୋଇ ଚିତ୍କାର କରୁଥାଏ–କିନ୍ତୁ ସଇତାନ ମାନେ ତାକୁ ମାଡ଼ିବସି ଗଣ ଧର୍ଷଣ କରୁଥାନ୍ତି ଏବଂ ତାର ଅସହାୟତାକୁ ପରିହାସ କରି ହସିଉଠୁଥାନ୍ତି ।

ସମସ୍ତେ—ହିଃ ହିଃ ହିଃ··· ହିଃ ହିଃ ହିଃ··· ( ଆହୁରି ଉନ୍ମତ୍ତ ହୋଇ ଅତ୍ୟାଚାର କରିଛନ୍ତି । )

(ସଇତାନମାନଙ୍କର ଅମାନୁଷିକ ଅତ୍ୟାଚାରରେ ଧରଣୀରାଣୀ କମ୍ପିଉଠିଛି । ଦୂରରୁ ଭାସି ଆସିଛି ପ୍ରକୃତିର "ହାହାକାର"– ବିଜୁଳି ଘଡ଼ଘଡ଼ି ଶବ୍ଦ, ବରଗଛରେ ଆଶ୍ରିତ କୁଆ, କୋଇଲି ଆଦି ପକ୍ଷୀମାନେ ଅଦ୍ଭୁତ ଚିତ୍କାର କରି ଗଛ ଉପରେ ଉଡ଼ି ବୁଲିଛନ୍ତି । ଉନ୍ମତ୍ତ ସଇତାନ ମାନଙ୍କର ହାତଗୋଡ଼ ବାଜି ବାପୁଜୀଙ୍କ ମୂର୍ତ୍ତିର ହାତବାଡ଼ିଟା ଭାଙ୍ଗି ପଡ଼ିଛି । ମାନସୀ

ପିଶାଚଙ୍କର ଅତ୍ୟାଗ୍ରହ ସହି ନ ପାରି ମରିଯାଇଛି । କିଛି ସମୟ ସନ୍ତାନମାନେ ନିଜ ନିଜ ପୋଜିସନରେ ସ୍ଥାଣୁ ପାଲଟି ଯାଇଛନ୍ତି । ଅନ୍ତରାଳରୁ ଶୁଣା ଯାଉଛି ମହାକାଳର ସ୍ୱର । ସାଇକ୍ଲୋରାମାରେ ସମୟ ଚକ୍ରର ଛାୟା)

ମହାକାଳ—(ସାଇକ୍ଲୋରାମାରେ ଦେଖାଦେଇ) ମୁଁ ମହାକାଳ କହୁଛି । ଦେଖୁଛନ୍ତି ତ ଜଗତବାସୀ ! ଗଣତନ୍ତ୍ର ଯୁଗରେ, ମଣିଷ ସମାଜର ଏ ବଡ଼ ପଶୁମାନଙ୍କର ଅମାନୁଷିକ ଦାଉ ଉତ୍ପାତ । ଏମାନେ ହେଉଛନ୍ତି ପ୍ରାଧାନ ଦେଶର ଶିଳ୍ପପତି, ଦେଶ ସେବକ ବା' ନେତା- ଧର୍ମଯାଜକ ଓ ସୁରକ୍ଷା କର୍ମଚାରୀ ବା' ପୋଲିସ । ନିଜର କର୍ତ୍ତବ୍ୟ ଭୁଲି, ଦେଖୁଛନ୍ତି ତ- ଏମାନେ ସମସ୍ତେ ମିଶି କିପରି ପୈଶାଚିକ ଅପରାଧ କରିଚାଲିଛନ୍ତି । କିଏ ଦେବ ଏମାନଙ୍କ ବିରୁଦ୍ଧରେ କୋର୍ଟ କଚେରୀରେ ସାକ୍ଷୀ ପ୍ରମାଣ ? ନା' କେହି ଦେବେନି, ବିନା ପ୍ରମାଣରେ, ଅର୍ଥ ଓ କ୍ଷମତା ବଳରେ ଏମାନେ ଆଇନହାତରୁ ଅନାୟାସରେ ଖସିଯିବେ । କିନ୍ତୁ ଏମାନଙ୍କୁ ମୁଁ ଛାଡ଼ିବିନି । ଦିନେନା' ଦିନେ କଠୋର ଶାସ୍ତି ଦେବି । (ହସି) ତା' ପୂର୍ବରୁ ମୁଁ ଦେଖିବାକୁ ଚାହେଁ- ଜଗତବାସୀଙ୍କ ପ୍ରତିକ୍ରିୟା । ଏ ଯୁଗର ଦଳିତ, ଅବହେଳିତ, ନିଷ୍ପେସିତ ମଣିଷ- ଅତ୍ୟାଚାର, ବ୍ୟଭିଚାର ବିରୁଦ୍ଧରେ ବିପ୍ଳବର ସ୍ୱର ଉତ୍ତୋଳନ କରୁଛି କି ନାହିଁ- ବିପ୍ଳବର ସ୍ୱର ଉତ୍ତୋଳନ କରୁଛି କି' ନାହିଁ... (ଅନ୍ତର୍ଦ୍ଧାନ)

(ଅନ୍ତରାଳରୁ କିଷନ ଲାଲ ରାଉତ ମିଶର ନାଇଟ୍ ଶିଫ୍‌ଟୀ ସାଇରନ୍ ଶୁଣାଯାଉଛି । ସନ୍ତାନମାନେ ସ୍ଥାଣୁ ଅବସ୍ଥାରୁ ଗତିଶୀଳ ହୋଇଛନ୍ତି । ପୁନଶ୍ଚ ମାନସୀର ଶବ ଉପରେ ଅତ୍ୟାଚାର କରିଛନ୍ତି ନିର୍ଦ୍ଦୟରେ ହସି ହସି । ହଠାତ୍ ସେମାନଙ୍କ ମନରେ ଆତଙ୍କ ଜାତ ହୋଇଛି । )

ଛଟବର—(ସନ୍ଦେହ କରି) ଆରେ ଟୋକୀଟା ମରିଗଲାନା' କଣ ?

ହର୍ଷି—(ମାନସୀ ପାଖରୁ ଉଠିଆସି) ତମେ ସବୁ ମଦ ନିଶାରେ ଯେମିତି ଉତ୍ପାତ ହେଲନା'- ମତେତ ନାହିଁ କଣ ବଞ୍ଚନ୍ତା ?

ବୈରାଗୀ—(ଭୟରେ) ଚାଲ ଏଠୁ ପଳାଇ ଯିବା । ହେଡ଼୍‌କୀଙ୍କ ମିଲର ନାଇଟ୍ ଷାଇରନ୍ ବାଜିଲାଣି- ମଜଦୁରମାନେ ଛୁଟି ହୋଇ ଏବାଟେ ଆସିଯିବେତ- ସମସ୍ତେ ଧରାପଡ଼ିଯିବା···

କିଷନ—(ମାନସୀ ପାଖରୁ ଉଠିଆସି) ଆରେ ଘାବ୍‌ଡାଓ ମତ୍ । ଜାନେକା ପଡ଼ିଲେ- ଏ ଝୁମ୍ପୁଡ଼ିମେ ଆଗ ଲଗା ଦେଙ୍ଗେ- ଆଓର ଲଡ଼କୀକୋ ଓ୍ୱାହିଁ ଜଲାଦେକେ ଚଲା ଜାଏଙ୍ଗେ··· ସବୁତ୍ କୁଛ ନେହିଁ ରହେଗା···

ହରି—(ଆନନ୍ଦରେ) କରେକ୍ଟ ସେଠଜୀ ! କରେକ୍ଟ- ତୁମର କି'ବୁଦ୍ଧି...

କିଷନ—(ପକେଟରୁ ସିଗାରେଟ୍ ଲାଇଟର ବାହାରକରି ହଲାଇ) ଆଓ ସବ୍ ମେରେ ସାଥ୍···

(ଜଳନ୍ତା ଲାଇଟର ଧରି କିଷନ ଲାଲ ଝୁମ୍ପୁଡ଼ି ଆଡ଼କୁ ଆଗେଇଛି ଚତୁର୍ଦ୍ଦିଗକୁ ସତର୍କ ଦୃଷ୍ଟି ଦେଇ । ତା'ର ପଛରେ ଅନ୍ୟ ତିନିଜଣ ଧରାଧରି ହୋଇ, ଭୟରେ ଧୀରେ ଧୀରେ ପାଦ ପକାଇ ଚାଲିଛନ୍ତି ! ଦୂରରୁ ଶୁଣାଯାଉଛି ଜିପ୍‌ଗାଡ଼ି ହର୍ଣ୍ଣ ମାରି ଆସିବାର ଶବ୍ଦ । ସମସ୍ତେ ଭୟଭୀତ ହୋଇ ଚାହିଁଛନ୍ତି ସହର ଆଡ଼କୁ । ପଡ଼ିଛି ସେମାନଙ୍କ ଉପରେ ଜିପ୍ ଲାଇଟ । )

ନଟବର—(ଛାନିଆରେ) ପୋଲିସ ଆସିଗଲା ବୋଧହୁଏ···

ହରି—(ଭୟରେ) କୁହ ଏବେ କଣ କରିବା...

ନଟବର—ଧରାପଡ଼ିଯିବା ତ··· ସମସ୍ତେ ଫାଶୀ ଖୁଣ୍ଟରେ ଝୁଲିବା....
ଚାଲ, ପଳାଇଚାଲ··· ପଳାଇଚାଲ···

(ସମସ୍ତେ ବିପରୀତ ଦିଗକୁ ଦୌଡ଼ିବା ଆରମ୍ଭ କରିଛନ୍ତି ।

ପୁନଶ୍ଚ ଢିପ୍ ହର୍ଷ ଶୁଣାଯାଉଛି । ମଞ୍ଚ ଉପରେ ସେମାନେ ନାଟକୀୟ ଢଙ୍ଗରେ ଦୌଡ଼ୁ ଦୌଡ଼ୁ ଅନ୍ତରାଳକୁ ଗଳି ଯାଉଛନ୍ତି । କିଛି ସମୟପରେ ଢିପ୍ ପାକିଂ ଶବ୍ଦ ଶୁଣାଯାଉଛି ।)

ମଧୁ—(ଅନ୍ତରାଳରୁ ଡାକିଡାକି ପ୍ରବେଶୁଛି ।) ମାନୀ ! ମାନୀ···
( ଝୁମ୍ପୁଡ଼ି ଦାଡ଼ା ପାଖରେ ରହି ) ମାନୀ– ମାନୀ······ (ଝୁମ୍ପୁଡ଼ି ଭିତର ଖୋଜିଆସି) କାହିଁ ? ଝୁମ୍ପୁଡ଼ି ଭିତରେତ ନାହିଁ– ଗଲା କୁଆଡେ ? (ମାନସୀକୁ ଦେଖି ଦୌଡ଼ିଯାଇ) ମାନୀ ! ଉଠ ମାନୀ– ଉଠ··· ତୁମ ପାଇଁ ଘରଭଡ଼ାନେଇ, ଢିପ୍ ଧରି ଆସିଛି । ତୁମେ ଅଉ ଏଠି ରହିବନି । ଆରେ ଏମିତି କଣ ଶୋଇଛ ? (ହଲାଇ) ମାନୀ ! ଉଠମାନୀ– ଉଠ (ମାନୀର ଦେହ ଥଣ୍ଡା ଲାଗିବାରୁ) ଏଁ.... ଦେହଟା ଏତେ ଥଣ୍ଡା··· (ପରୀକ୍ଷାକରି କାନ୍ଦି ଉଠିଛି) ମାନୀ ଆଉ ନାହିଁ । (ଦୂରେଇ ଆସି) ମୋ ରିସର୍ଚ୍ଚ– "ସ୍ୱାଧୀନ ଦେଶରେ ରାସ୍ତା କଡ଼ର ମଣିଷ" - ଏଇଠି ଶେଷ ହୋଇଗଲା··· ଏଇଠି ଶେଷ ହୋଇଗଲା··· (କାନ୍ଦିଛି) (ଗଳି ପଡ଼ିଛି ମଧୁମିଶ୍ର । ପ୍ରବେଶିଛନ୍ତି ରାମ ଓ ଶ୍ୟାମ । )

ରାମ—କଣ ହେଲା ମଧୁ ବାବୁ ?

ମଧୁ—ଦେଖ, ତୁମ ଗେହ୍ଲୀ ଭଉଣୀକୁ ଦେଖ ...

ରାମ—(ଆଶଙ୍କାରେ) କଣ ହୋଇଛି ମାନସୀର.... (ଦେଖି ଦୀର୍ଘ ଶ୍ୱାସ ଛାଡ଼ିଛି । ) ଗଲା··· ମାନସୀ ସଇତାନ ମାନଙ୍କର ଶିକାର ହୋଇଗଲା । ସବୁରାତି ସେମାନେ ମାନସୀ ଉପରେ ମେଣ୍ଢା ଦେଲେ···

ଶ୍ୟାମ—ମୁଁ ଯାହା ଭାବୁଥିଲି, ତାହା ହୋଇଗଲା । ବାପାଙ୍କୁ ପୋଲିସ ଧରିନେଲାପରେ– ସଇତାନମାନେ ମାନୀକୁ ଗଣଧର୍ଷଣ କରି ମାରିଦେଲେ– (କାନ୍ଦିଛି)

ଭାମ—ଯା', ଯା' ଭଉଣୀ.... ତୋ' ଅମ୍ଭାର ସଦଗତି ହେଉ....
(କୋରରେ କାନ୍ଦିଛି) ଏଇ ବେଇମାନ ସ୍ୱାର୍ଥପର ଦୁନିଆଁରେ ନ୍ୟାୟ ନାହିଁ- ବିଗ୍ରହନାହିଁ । ନିଃସ୍ୱ, ଅସହାୟ ମଣିଷର ବଞ୍ଚିବାର ଅଧିକାର ନାହିଁ···

ମଧୁ—(ଅପୂର୍ବ ଉତ୍ତେଜନାରେ ଦୌଡ଼ିଯାଇ, ବାପୁଜୀଙ୍କ ହାତର ଭଙ୍ଗା ବାଡ଼ିଟାକୁ ଉଠାଇଛି ଓ ବାପୁଜୀଙ୍କ ମୂର୍ତ୍ତିକୁ ଗୁହାଁରି କହିଛି ) ବାପୁଜୀ !!! ତୁମେ ହାରିଗଲ ବାପୁଜୀ... ନୀତି ଆଦର୍ଶ ତୁମର ବିଫଳ ହୋଇଗଲା । କାହିଁ ? କାହିଁ ତୁମର ରାମରାଜ୍ୟ ? ଯେଉଁମାନଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ତୁମେ ଆଣିଦେଇଥିଲ ସ୍ୱାଧୀନତା- ଦେଖିଲତ ସେମାନଙ୍କର ନାରକୀୟ କାର୍ଯ୍ୟ କଳାପ ? (ପଜ) ଏ ଯୁଗ ଧ୍ୱଂସ ବାପୁଜୀ- ଏ ଯୁଗ ଗୁହେଁ ଅନ୍ୟ ଏକ ବିପ୍ଳବ... ଅନ୍ୟ ଏକ ମହାଭାରତ ଯୁଦ୍ଧ । (ସ୍ଲୋଗାନ ଦେଇଛି) ଇନ୍ କ୍ଲାବ- ଜିନ୍ଦାବାଦ···

ଭାମଶ୍ୟାମ—(ଉତ୍ତେଜିତ ହୋଇ) ଜିନ୍ଦାବାଦ- ଜିନ୍ଦାବାଦ...

ମଧୁ—(ମାର୍ଚ୍ଚ ପୋଜରେ ) ଇନ୍କ୍ଲାବ- ଜିନ୍ଦାବାଦ···

ଭାମଶ୍ୟାମ—(ମଧୁ ପଛରେ ଲାଇନ୍ କରି) ଜିନ୍ଦାବାଦ- ଜିନ୍ଦାବାଦ...
(ମାର୍ଚ୍ଚ ପୋଜରେ ସମସ୍ତେ ସ୍ଥାଣୁ । ମଞ୍ଚ ଉପରେ ନାଲି ଆଲୋକର ବନ୍ୟା । ସାଇକ୍ଲୋରାମାରେ ସମୟ ଚକ୍ରର ଛାୟା )

ମହାକାଳର ସ୍ୱର-ମୁଁ ମହାକାଳ କହୁଛି- ଏଇ ହେଲା 'ଅନ୍ୟ ଏକ ବିପ୍ଳବ'ର ପ୍ରଥମାରମ୍ଭ । ଆସନ୍ତା କାଲିର ଅପେକ୍ଷାରେ ମୁଁ, ଆପଣମାନେ, ଆମେ ସମସ୍ତେ.......

[ ଧୀରେ ଧୀରେ ମଞ୍ଚ ଅନ୍ଧାର ]

— ସମାପ୍ତ —





# ନାଟ୍ୟାଚାର୍ଯ୍ୟ ଚିନ୍ତାମଣି ଜେନାଙ୍କର ଅନ୍ୟାନ୍ୟ ପ୍ରକାଶିତ ପୁସ୍ତକ

## -ଉପନ୍ୟାସ-

୧। ସ୍ୱପ୍ନର ସଂସାର
୨। ସଂଗପଞ୍ଚ ପୁଅ (ନାଟ୍ୟରୂପ ''ତୁଳସୀ'' ଏବଂ ଚଳଚ୍ଚିତ୍ର ''ସିନ୍ଦୁର ବିନ୍ଦୁ''
୩। ରକ୍ତ କଇଁ
୪। ଉଲ୍କା ଓ ତୋଫାନ

## - ନାଟକ -

୧। ରକ୍ତ ତିଳକ
୨। ସନ୍ଧ୍ୟା ତାରା (ଚଳଚ୍ଚିତ୍ର)
୩। ସୂର୍ଯ୍ୟ ତୃଷ୍ଣା
୪। କୃଷ୍ଣ ଚୂଡ଼ା
୫। ଧୂମକେତୁ
୬। ଧର୍ମାଶୋକ
୭। ଚାଲ ଆଲୋକ ଖୋଜିବା
୮। ସ୍ୱପ୍ନ ଓ ସତ୍ୟ ସମ୍ପର୍କରେ
୯। ମୁଁ ଆଉ ବଞ୍ଚିବି ନାହିଁ
୧୦। ଏବଂ ପ୍ରତିଦ୍ୱନ୍ଦ୍ୱୀମାନେ
୧୧। ବିପ୍ଳବୀ ବାଘା ଯତୀନ
୧୨। ବଙ୍ଗବନ୍ଧୁ ମୁଜିବୁର
୧୩। ଜ୍ୱାଳାମୁଖୀ
୧୪। ଏକଲବ୍ୟ
୧୫। ମାନଗୋବିନ୍ଦ
୧୬। ସୂର୍ଯ୍ୟୋଦୟ ପୂର୍ବେ
୧୭। ଶହୀଦ ଭଗତ ସିଂ
୧୮। ଶହୀଦ ବୀର ବାଜି ରାଉତ
୧୯। ବୀର ସୁରେନ୍ଦ୍ର ସାଏ
୨୦। ଅମୃତ
୨୧। ଶତାବ୍ଦୀର ଆର୍ତ୍ତନାଦ
୨୨। ରାଜପଥର ବିଳାପ
୨୩। ଶହୀଦରାଣୀ ଜିନତ ବେଗମ
୨୪। ସେମାନେ ଦେଖିଥିଲେ
୨୫। ତାଜମହଲର ଶିଳ୍ପୀ
୨୬। କାଞ୍ଚି ଅଭିଯାନ
୨୭। ପାପପୂଣ୍ୟରୁ କିଛି
୨୮। ଅନ୍ୟ ଏକ ବିପ୍ଳବ

